# ନେତ୍ରାସ୍ରବ

ଲେଖକ :
ଶ୍ରୀ ହରିହର ମିଶ୍ର

ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

Digitized by PPRACHIN/SOA

ନେତ୍ରୋତ୍ସବ

ମୁଖ୍ୟ ଉପଦେଷ୍ଟା
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ
ଶ୍ରୀ ନୃସିଂହପ୍ରସାଦ ମିଶ୍ର
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ - ୭୫୩ ୦୦୨

ପ୍ରଥମ ସଂସ୍କରଣ ନେତ୍ରୋତ୍ସବ, ୨୦୦୬

ମୁଦ୍ରାକର
ଗ୍ରାଫିକ୍ସ ସୁପ୍ରିୟା ଓ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ବନ୍ଧାଇ ଟ. ୯୦.୦୦ ମାତ୍ର
ସାଦା ଟ. ୭୫.୦୦ ମାତ୍ର

NETROTSABA

Sri Harihar Mishra

Published by :
Sri N. P. Misra
Cuttack Students' Store
Balubazar, Cuttack - 753 002

Principal Adviser
Sri R. P. Misra

First Edition : June, 2006

Printers
Graphics Supriya & Sangeeta Printers
Cuttack

Price
Deluxe : Rs. 90/- only
Popular : Rs. 75/- only

Digitized by PPRACHIN/SOA

# ସୂଚୀପତ୍ର

## ନେତ୍ରୋତ୍ସବ



Digitized by PPRACHIN/SOA

## ଆୟତି



Digitized by PPRACHIN/SOA

Digitized by PPRACHIN/SOA



Digitized by PPRACHIN/SOA

# ଧନ୍ୟ ସେହୁ ପୁରୀ

ଦୁଆର ଫିଟାରୁ ପହଡ ପଡ଼ିବା ଯାଏଁ
ତମର ରାଜନୀତି
ସୃଜନ ସେବା ଯଦି ଈଶ୍ୱର ସେବା
ମୁଁ ରହିଛି ତମରି ସେବାରେ
ଆଲୋକ ଧାମରେ
ତୁମ ଆନନ୍ଦ ଧାମରେ ।

ଏ ରୀତିନୀତିରେ ଛନ୍ଦା ହୋଇ
ତମେ କ'ଣ ଆଉ ସୃଷ୍ଟି କରୁ ନାହଁ
ନା ବାକି ସୃଷ୍ଟି ସବୁ ବ୍ୟର୍ଥ ତୁମ ପାଇଁ
ସେପରି ବା ରହିଛି କେଉଁଠି ସ୍ଥାନ
ଯେଉଁଠି ତୁମ ସେବା ହେବ ନାହିଁ
ଏ ମନ୍ଦିର ବିନା କ'ଣ
ନାହିଁ କିଛି ଆନ ଅନୁଷ୍ଠାନ
କି ଅବା ଗୋଲୋକ ଏହି ଭୂଲୋକରେ
ନିତ୍ୟ ପ୍ରତ୍ୟମାନ ।

ତୁମ ପାଇଁ
ସବୁଠି ତ ଅକ୍ଷତ ରହିଛି ଉପଚାର
ତମ ପାଇଁ ଯାହା ଯାହା ଆବଶ୍ୟକ
ତାକୁ ଚିହ୍ନାଇଛି କେହି
ସେପରି କିଛି ନାହିଁ ।

ଆପେ ଆପେ ନେବା ଦେବା ଚାଲିଛି
ଆହାର ବିହାର ନିଦ୍ରା ମୈଥୁନର ଲୀଳା
ପ୍ରାଣୀଙ୍କର
ତମର ଶୃଙ୍ଗାର ମାତ୍ର ଅନ୍ୟ ପ୍ରକାରର
ତମ ଲୀଳା ତମ ଭାବ ତମରସ ଭିନ୍ନ ଜଗତର ।

Digitized by PPRACHIN/SOA

ତମେ ଚଳନ୍ତି ଠାକୁର
ରୁଦ୍ଧଦ୍ୱାର କି ରତ୍ନସିଂହାସନରେ
ଅଥର୍ବ କାଠପିତୁଳା ନୁହଁ
କି ନୁହଁ ହାତଗୋଡ଼ ନ ଥିବା ମାଦଳ ।

ତୁମ ଆଦେଶରେ ସବୁ ଚାଲିଛି
ମେଘ ସମୁଦ୍ର, ପବନ ଆଲୋକ ଅନ୍ଧାର
ଯମୁନା ମଧୁବନ କୋଇଲିବୈକୁଣ୍ଠ
ପଞ୍ଚତୀର୍ଥ ସବୁଠି ତୁମର ପାଦପଦ୍ମ ଚିହ୍ନ ।

ଆଜି ଦୁଃଖର ଗୁଳୁଗୁଳିରେ
ଚୁପ୍‌ଚାପ୍ ବସିରହ
ଓହ୍ଲେଇ ଆସ ଆର୍ତ୍ତିଜନର କରୁଣ ପ୍ରାର୍ଥନାରେ
ପ୍ରସରିଯାଅ ପବନରେ ମେଘ ଭଳି
ଉର୍ମି ଭଳି ସମୁଦ୍ର ବକ୍ଷରେ ।

ତମର ତ ମହାରାସ ଚାଲିଥାଏ ପ୍ରତି ଯୁଗେ
କପି ତପି ଗୋପୀ ଆଉ ଅପ୍ସରୀଙ୍କ ମେଳେ
ଆଜି ଏଠି ସେବକଙ୍କ ଗହଳିରେ ।

କି ଆନନ୍ଦେ କାଳ କାଟୁଥାଅ
ଛପନ ପ୍ରକାର ଭୋଗ
ଛତିଶ ପ୍ରକାର ସେବା
ଚୂଳରେ ମାଳତୀର ଧଣ୍ଡାମାଳ
ତୁମ ଲୋକେ ଝୁଲୁଥା'ନ୍ତି ଗନ୍ଧର୍ବମାନଙ୍କ ଭଳି
ଡୋଳା ଲେଉଟାଇ
ଛାନ୍ଦ ଚମ୍ପୂ ମାଳଶ୍ରୀ
ଓ ଗୀତଗୋବିନ୍ଦରେ ।

Digitized by PPRACHIN/SOA

ସନ୍ଥଙ୍କ ଜଟାଜୂଟ ଭଳି ଜଟିଳ କଳ୍ପବଟର ଛାଇରେ
ଅତୀତର ଶୀତଳ ପିଣ୍ଡାରେ
ବାହୁଙ୍ଗାର ଜଙ୍ଘାରେ ଦୀପଟିଏ ଜଳୁଥାଏ
ମାହାର୍ଦ୍ଦ କୁଡ଼ିଆ ଭିତରେ
ଭାଗବତ ପଢ଼ା ଚାଲିଥାଏ ।

କେହି ନା କେହି ଶୁଆଇ ପକାଏ ମୋର ସମୟକୁ ତୁମ କୋଳ
ନବ ଯୌବନରେ
ଆଲଟ ଚାମର ଢାଳି ହସି ନାଚି ପାଦରେ ଘୁଙ୍ଗୁର ବାନ୍ଧି
ଶୈଶବରୁ ଯୌବନ
ଓ ଯୌବନରେ ସନ୍ୟାସର ସବୁ ନିଷ୍ଠା ନେଇ
ମୁଁ ଆସିଛି ଧାଇଁ ।

ଉଛା ନ ହେଲେ ତ ତୁମକୁ ଦେଖିହୁଏ ନାହିଁ
କେତେ ପାଟପୀତାମ୍ବରୀ ଓ ପଣତକାନି ଧରି
ଗୁଲୁଗୁଲୁ କଥା କହି ଯା'ଆସ କରୁଥିବି
ଏକା ଏକା ଦର୍ଶନ କରୁଥିବି ଅମାପ ଭୟ ନେଇ
ଲାଜ ଲାଜ ହୋଇ ?

❑❑❑

Digitized by PPRACHIN/SOA

# ବିନିମୟ

ଏ ଯେଉଁ ପବନ ଘୂରିବୁଲୁଛି
ନିଃଶ୍ୱାସରୁ ନିଃଶ୍ୱାସର ଗଳିକନ୍ଦିରେ
ବଦଳି ଯାଉଛି କେବେ ବିଷ ତ କେବେ ପିୟୁଷରେ
ବିନିମୟ ଚାଲିଛି ଭଲମନ୍ଦର ଜନ୍ମମୃତ୍ୟୁର
କେବେ ଅମ୍ଳଜାନର ତ କେବେ ଅଙ୍ଗାରକାମ୍ଳର ।

ଏ ପବନରେ ଅଛି ଅରଣ୍ୟ ଓ ସମୁଦ୍ରର ନିଃଶ୍ୱାସ
ଅଛି ନଦୀ ଏବଂ ଉପତ୍ୟକାର ସ୍ପନ୍ଦନ
ସେମାନଙ୍କର ପରିଚୟରେ ମୁଁ ଫେରିପାଏ
ମୋର ହଜିଥିବା ସତ୍ତା ଏବଂ ମୁଗ୍ଧ ଅନୁଭବ
ଯାହା ମୁଁ ସମର୍ପିଥାଏ ଫେରିପାଏ
ଫଳରେ ପୁଷ୍ପରେ
ନୈବେଦ୍ୟ ସାମଗ୍ରୀ ମୋର ସୌନ୍ଦର୍ଯ୍ୟର
ସହସ୍ର ରୂପରେ ।

କେବଳ ପରିତୃପ୍ତ କରିବାକୁ ତୁମକୁ
ବିନିମୟ ଚାଲିଥାଏ ପବନରେ
ଅଥଚ ତମେ ଅହରହ ଖୁସିଥାଅ
ପ୍ରୀତ ଏବଂ ପରିତୃପ୍ତ ଥାଅ
ତେଣୁ ଫେରାଇଦିଅ ପବନରେ ସବୁକିଛି
ବଞ୍ଚିବାର ଉପାଦାନ
ବଞ୍ଚିବାର ଜୀବଜଗତକୁ ।

ତମେ ଯେଉଁ ଜଗତରେ ଥାଅ
ବେଶ୍ ଖୁସିରେ ଥାଅ
ଏଠି ଯାହା କିଛି ସୁଖକର
ସେ ସବୁ ବହୁକଷ୍ଟରେ ପହୁଁଚାନ୍ତି ପକ୍ଷୀମାନେ ସେଠି ।

Digitized by PPRACHIN/SOA

ନେତ୍ରୋତ୍ସବ -୫

କଷ୍ଟେ ମଷ୍ଟେ ବାହାରି ରାତିସାରା
ତାତିଲା ବାଙ୍ଗ ଉଠୁଥିବା ଧୂଳିରୁ
ଧୂଆଁ ଉଠୁଥିବା ଦିଗନ୍ତରୁ
ଅରଣ୍ୟ ଓ ସମୁଦ୍ରର ଆହୁରି ଊର୍ଦ୍ଧ୍ୱକୁ ।

ତମେ ସେଠି ଯେଉଁ ଜଗତରେ ଥାଅ ପଛେ
ବିଭିନ୍ନ ରୂପାନ୍ତର ପରେ ଯୁବାବସ୍ଥାରେ ହିଁ ଥାଅ
ବନ୍ଧା ହୋଇ ଗୋଟିଏ ଲୟରେ
ହୋଇପାରେ ମଳୟ ଓ ମୌସୁମୀର
ଯୁଗଳବନ୍ଦୀରେ ।

ସେଠାକାର ଜଗତର ଅବିକଳ ଲୀଳାମଞ୍ଚ
ଏ ଜଗତ
ଆମେ ଖାଲି ଦୁଃଖ ପାଉ
ଦହଗଞ୍ଜ ହୋଇ ମରୁ
ନିର୍ମୋକ ତ୍ୟାଗ ଏବଂ ଗ୍ରହଣର ଏ କାଳ
ରୁନ୍ଧାବେଳ ବେଶବଦଳର ।

ବଦଳି ବି ଏକ ବିନିମୟ
ଅଥଚ ଯାହା ଥାଏ ସବୁକାଳେ ଥାଏ
ଗର୍ଭରୁ ଗର୍ଭ ଚାଲେ ସେ ଘଟର ବିନିମୟ
ଅତୁଟ ସେ ସେହିଭଳି ରହେ
ତଫାତ୍ ଏତିକି
ଯେତେ ଖୋଜାଖୋଜି ସତ୍ତ୍ୱେ
କେହି ତାକୁ ଦେଖି ନାହିଁ
ମଞ୍ଚ ତା'ର ଛୁଇଁପାରି ନାହିଁ ।

Digitized by PPRACHIN/SOA

୬- ନେତ୍ରୋତ୍ସବ

ସେହି ଅଦୃଶ୍ୟର ଲୀଳା ଚାଲିଛି
ଆମେ କେହି ନ ଥିବା ସ୍ଥାନରେ
ସେ ଲୀଳାର ଅନୁକୃତି
ସ୍ଥାପତ୍ୟରେ ମେଳାରେ
ପର୍ବପର୍ବାଣିରେ ।

ସତ ଆଉ ମିଛର ଏ ବିନିମୟ
ବାହାରର ଭିତର ସହିତ
ନଖଦର୍ପଣରେ ଚାଲେ ଅଭିନୟ
ଅଲୌକିକ ମନେହୁଏ ଲୌକିକ ଜଗତ ।

❑❑❑

।। ପୂଜାସଂଖ୍ୟା ୨୦୦୫ "ଝଙ୍କାର"ରେ ପ୍ରକାଶିତ ।।

Digitized by PPRACHIN/SOA

# ଥିଏଟର୍

କିଏ ଖୋଲେ ଆଉ ବନ୍ଦ କରେ ଯବନିକା
ନିର୍ଦ୍ଧାରିତ ସମୟରେ
କେଉଁ ସୂତ୍ରଧର ସେ ଖେଳ ଦେଖାଏ
ନିଜ ଇଚ୍ଛାମତେ ।

କାହାର ବ୍ୟକ୍ତିଗତ ଅସନ୍ତୋଷ ବୁଝେନା ସେ
ସବୁ ତ ପିତୁଳା ଆମେ ତା' ହାତରେ
ପୃଥିବୀ ସହିତ ଆମେ ଘୂରି ଘୂରି ଦେଖୁଥାଉ ଦୁଇଟି ପକ୍ଷକୁ
କେବେ ଗୋରୀ ତ କେବେ କାଳୀ ଝିଅଟିକୁ
ଆମେ ପଡ଼ିଥାଉ ସେ ମଞ୍ଚମାୟାରେ
ଆଲୋକ ଓ ଅନ୍ଧାରର ଦ୍ୱୈତ ନୃତ୍ୟରେ

ଖସିବାକୁ ଚେଷ୍ଟାକଲେ ଦ୍ୱାରୀର ବେତ୍ରାଘାତ
ଏପରି ବି ଦୃଶ୍ୟ ଅଛି ବାମନର
ବଳୀୟାନ୍ ବ୍ୟକ୍ତିର ମସ୍ତକକୁ
ତୃତୀୟ ପାଦରେ ତା'ର
ଚାପି ଦେଉଥିବାର ।

ପକ୍ଷୀଶାବକ ଭଳି ଉଡ଼ିବାକୁ
ଉପକ୍ରମୁଥିବ ମୁଁଟିଏ
ନିଜ ଡେଣାରେ ସୀମାବଦ୍ଧ କରିବାକୁ
ଆକାଶକୁ ।
ମୁଣ୍ଡ କାଢ଼ିଲେ ପାହାର
ରଙ୍ଗାଭିନୟ ଚଢ଼ା ଉତ୍ତରାର
ମୋ ପରି ଦୁଃଖର ପ୍ରସ୍ତ ପ୍ରସ୍ତ ପ୍ରସ୍ତରରୁ
ମୁଣ୍ଡ କାଢ଼ିଥିବା ପୃଥିବୀ
ଯେମିତି ଉଜ୍ଜ୍ୱଳ ଅଙ୍କୁର ।

Digitized by PPRACHIN/SOA

ସଭ୍ୟତା ଓ ସଂସ୍କୃତିର ବାହାନାରେ ଏ ପୃଥିବୀ
ଗପସପ କରିଥିବ ତା'ର ମୁକ୍ତିଦାତା ସହିତ
ତା'ର ଗତି ପ୍ରକୃତିର ଯେ ସୂତ୍ରଧର
ତଥାପି ଆମେ ଶାଣିତ କରୁ ଆମ ସହସ୍ର ଡେଣା
ନିହତ ହେଉ
ନିରସ୍ତ୍ର ଆତ୍ମସମର୍ପଣଠାରୁ
ବଞ୍ଚିଯିବା ପାଇଁ ।

ସେ ବି ଆମପରି
ଅନ୍ଧାର ଆକାଶରେ ଧାରେ ବକାଳିକା
ସବୁଜ ଭୁଜଙ୍ଗଟିଏ ଲାଞ୍ଜରେ ତା' ଠିଆହୁଏ
ନିର୍ମୂଳି ଲଟାପରି ଆଲୋକ ଟିକିଏ ପାଇଁ
ଆଶ୍ରା କରି ଶାଳବୃକ୍ଷଟିଏ ।

ଯିଏ ବି ଆସନ୍ତି ତା'ର ପ୍ରତିପକ୍ଷ
କିଏ ସୁନାମିନିଗ
ତ କିଏ ମିଥ୍ୟାମୋହିନୀ
ସେ ହଟେଇଦିଏ ମୁଖା ଆଉ
ଠିଆହୁଏ ଏକା
ଭରପୂର ଦର୍ଶକ ସାମ୍ନାରେ ।

ଅଥଚ ଦର୍ପଣର ଜଡ଼ାଉ ସ୍ତମ୍ଭରେ
ନିଜର ପ୍ରତିବିମ୍ବ ଦେଖି ସେ
ନିଜକୁ ଆଲିଙ୍ଗନ କରୁଥାଏ
ବାରମ୍ବାର ଅନ୍ୟଠୁ ଭାବାବେଗ ନେଇ
ବୁଡ଼ିରହି ଆପଣା ରସରେ
ସେ ଶୁଭ୍ରସ୍ନାତ
ବିବର୍ତ୍ତିତ ହେବା ପୂର୍ବରୁ ଆଉ ଏକ ଦୃଶ୍ୟରେ
ବିସର୍ଜିତ ସେ ମୁଖ୍ୟ ଚରିତ୍ର ।



Digitized by PPRACHIN/SOA

# କୁହୁଡ଼ି ଓ ସଂଧ୍ୟାଦୀପ

## କୁହୁଡ଼ି :

ସକାଳ କୁହୁଡ଼ି ଭିତରେ
ଲୁଚିଥିବା ଶ୍ରୀମନ୍ଦିର ତଥାପି ବିବର୍ଣ୍ଣ
ସୂର୍ଯ୍ୟ କିରଣରେ

ଆମେ ଅପେକ୍ଷା କରୁ
ଅନେକ ଦୂରରୁ ଦିଶୁଥିବା ସ୍ୱଚ୍ଛ ମନ୍ଦିର ମୁହଁରୁ
କେବେ ନା କେବେ ଉଠିଯିବ ପର୍ଦ୍ଦା କୁହେଳିର ।

ସୂର୍ଯ୍ୟାସ୍ତବେଳକୁ ଆମେ ଦେଖିପାରିବା
ଶେଷଥର ପାଇଁ ଉଜ୍ଜ୍ୱଳ ହୋଇ
ଅନ୍ଧାରରେ ବୁଡିଯାଉଥିବା ଆମ
ଈପ୍ସିତ ଦେବାଳୟ ।

## ସଂଧ୍ୟାଦୀପ

ସୂର୍ଯ୍ୟଦୀପ
ତେଜିଉଠିବ ଦିନେ ନା ଦିନେ
ଦୀପଦାନ ଚାଲିଥିବ ରାତିସାରା
ଅନ୍ଧାରରେ
ଧାଡ଼ି ଧାଡ଼ି
ପଛକୁ ପଛ ।

ନ ଥିବ ସିଏ
ନ ଥିବା ତମେ କି ଆମେ
ଜ୍ୟୋତି ଜଳୁଥିବ ଦୀପର
ଦୀପଦ୍ୱାରା
ଦୀପଟି ପାଇଁ ।

Digitized by PPRACHIN/SOA

ଧାଡ଼ି ଧାଡ଼ି
ପଛକୁ ପଛ
ଭିତରେ ବାହାରେ ।

କାଳରୁ କାଳ
ଯିବାଆସିବା
ସେ ରାସ୍ତାର ଅନ୍ଧାରେ ।

ଜଳୁଥିବ ଅଖଣ୍ଡ ।

❑❑❑

Digitized by PPRACHIN/SOA

# ପଦ୍ମବେଶ

କୁହୁଡ଼ିରେ ଏତେ ପଦ୍ମ
ଫୁଟୁଛନ୍ତି କିପରି
ବାଘ ଭଳି ମାଘର
ବୋଧେ ଝଡ଼ିପଡ଼ିଲାଣି ଦାନ୍ତ ।

ପୋଖରୀ ଭିତରେ ପୋତି ହୋଇ ଯିବାରେ
ପଙ୍କସବୁ ଚାଲିଆସିଲେଣି ଯଥେଷ୍ଟ ଉପରକୁ
ଏବେ ନିଜ ନାଡ଼ରେ ଛନ୍ଦିହେବାକୁ ପଡୁଛି
ଲାବଣ୍ୟନିଧିକୁ ।

କୁହୁଡ଼ି ଓ ମନୋହର ଦାସ
ଦିଶୁ ନ ଥିବା ଶ୍ରୀମନ୍ଦିର ଓ ବିଗତ ଦିଗନ୍ତ
ସବୁ ଅଗୋଚର
କେବଳ ନିଜ ଭିତରେ ତୃଷାର କାଚକେନ୍ଦୁ ଜଳ ।

ସେ ବୁଝେନା ସାତତାଳ ପଙ୍କର ଅତୀତ
କିବା ଆଜି ନାଗର ଦଂଶନ
ଜିଦ୍‌ରେ ଘରୁ ବାହାରି ଆସିଛି ସେ
ଏବଂ ପାଂଶୁଳ କଢ଼କୁ ଦେଖି ଚିନ୍ତାରେ ପଡ଼ିଛି
ଏବଂ ସେହି ମୁହଁ
ପତିଗୃହରୁ ଫେରିଆସିଥିବା ଶକୁନ୍ତଳାର ।

ସତେ ବା ଗଭୀର ନିଦରେ
ଅହଙ୍କାରୀ ସ୍ୱାମୀଟି ପାଖରେ
ଶୋଇ ଶୋଇ ପ୍ରଳାପରେ
କେଉଁ ପ୍ରେମିକର ନାଁ ଧରି
ପାପ ଅର୍ଜିଥିବା ନାରୀର ସେ ମୁହଁ

Digitized by PPRACHIN/SOA

ଯାହାକୁ ବାସିଫୁଲ କହି ଆଡ଼େଇ ଦେବେ
ଦଣ୍ଡଧାରୀ
ତିଳକଧାରୀ ।

ସିଂହଦ୍ୱାରୁ
ଗୋଛା ଗୋଛା ଫୁଲ ମୁଣ୍ଡରେ ବୋହି
କାନ୍ଧରେ ପକେଇ
ଫେରିଆସିବା ଆଗରୁ
ଭୋ ଭୋ କାନ୍ଦିଉଠିବ ମନୋହର
'କେବଳ ବୁଝିଲେ ବୁଝିବେ ସିଏ' କହି

ଅବଶ୍ୟ ତା' ଜାଣିପାରିବେ ଗଜପତି
ସ୍ୱପ୍ନରେ
ଯେ
ମନୋହର ପାପୀ ପ୍ରେମିକ
କି ପଳାତକ ନୁହେଁ
ସମର୍ପିତ ଭକ୍ତ ଜଣେ
ବିରହୀ ପ୍ରେମିକ ନୁହେଁ
ବିରାଗୀ ଓ ସମ୍ଭୋଗୀ ସନ୍ଥଟିଏ ।

କାରଣ ପ୍ରେମରେ ପଡ଼ନ୍ତି ନାହିଁ କେହି
ଉଠନ୍ତି ନିସର୍ଗକୁ
ଯାହା ଗଢ଼ା ହୋଇ ନାହିଁଏ ଯାବତ୍
ସେଭଳି କଳ୍ପଲୋକକୁ
ନର୍କର ଜ୍ୱଳନରେ
ଦାଉ ଦାଉ ଜଳୁଥିବା ସ୍ୱର୍ଗକୁ ।

ଯେମିତି ରୋଷଘର ଚୁଲ୍ଲୀରେ
ସିଝୁଥାଏ ପରିବା ଡାଲି ଚାଉଳ

Digitized by PPRACHIN/SOA

ଏବଂ ଅମଣୋହି
ବଦଳିଯିବାରେ ମଣୋହିରେ
ବାସୁଥାଏ ଦିବ୍ୟ ମହ ମହ ।

ପ୍ରେମରେ ପଡ଼ି ନ ଥା'ନ୍ତି କେହି
ଉଠିଥା'ନ୍ତି
ଯେମିତି ଉଠିବାକୁ ହୁଏ ପଙ୍କରୁ
ପଦ୍ମକୁ ।

ସକାଳୁ ପ୍ରଭୁ ପାଲଟିଯାଆନ୍ତି ସ୍ୱୟଂ ଶତଦଳ ।

❑❑❑

[ମନୋହର ଦାସ ମଧ୍ୟଯୁଗୀୟ ଜଣେ ଭକ୍ତ । ସେହି ଭକ୍ତ ପାଇଁ ଭଗବାନ୍ ଜଗନ୍ନାଥଙ୍କୁ ପଦ୍ମବେଶ ଧାରଣ କରିବାକୁ ହୁଏ ।]

Digitized by PPRACHIN/SOA

# ଗଜ ଉଦ୍ଧାରଣ

ଆରତ ନଳୀନବନକୁ
ଦଳନ କରିବାକୁ ଆସିଥିବା ମତ୍ତବାରଣ
ଗୋଟିଏ ପଦ୍ମକୁ ଟେକିଥିଲା ପ୍ରାର୍ଥନାରେ
ଊର୍ଦ୍ଧ୍ୱକୁ ।

ବିଷମ ସମସ୍ୟାରେ ଜାବୋଡ଼ି ଧରିଥିବା
କୁମ୍ଭୀର ଦାନ୍ତ
ଅତଳ ତଳକୁ ଟାଣୁଥିବା ସତ୍ତ୍ୱେ
ସେ ଫସିଯାଇନି ପଙ୍କରେ ।

ସେ ଅନିଷା କରିଛି
ନୀଳଶୈଳର ତିନୋଟି ରତ୍ନରୁ
ଚେନାଏ ସୁନା କିଏ
ଗଡ଼ାଇ ଦେଉଥାଏ ପ୍ରତ୍ୟହ ଏକ
ମୁହଁ ବନ୍ଦ ଥିବା କୂଅକୁ ସୋରାଏ ଦୀପ୍ତିରେ ।

ଯେଉଁ ଆଲୁଅରେ ଥାଏ ବସ୍ତ୍ର
ବିବସନା ବଧୂ ପାଇଁ
ଥାଏ ଆଶ୍ୱାସନା
ଅପଦସ୍ତା ନାରୀ ପାଇଁ
ଥାଏ ଆଶୀର୍ବାଦ
ଚୋଳାଏ ରକ୍ତର
ପଖଳା ହେବା ପାଇଁ ମୁକ୍ତକେଶ ।

ପଦ୍ମରେ ଥାଏ ରକ୍ତର ରଙ୍ଗ
ଲଜ୍ଜାରୁଣ ଉଦୟରାଗର ।

□□□

''ନନ୍ଦିଘୋଷ'' ୨୦୦୫ ରଥଯାତ୍ରା ସଂଖ୍ୟାରେ ପ୍ରକାଶିତ ।

Digitized by PPRACHIN/SOA

# ସାକ୍ଷୀପୁରୁଷ

କେବେ କିଏ କହିଥିଲେ
ଡୋଳା ଦୁଇ ତୁମ
ଗୋଟିଏ ସୂର୍ଯ୍ୟ ଗୋଟିଏ ଚନ୍ଦ୍ର
ଗୋଟିଏ ସତ୍ୟ ଗୋଟିଏ ସ୍ୱପ୍ନ ।

ସୂର୍ଯ୍ୟ ଚନ୍ଦ୍ର ତ ମାଧ୍ୟମ ଆମ
ଯାଇଥିବା ଓ ଆସିବାକୁ ଥିବା ଦୃଶ୍ୟର
ଦେଖା ଆଉ ଅଦେଖା ଭିତରେ
ପଶ୍ଚିମରୁ ପୂର୍ବକୁ ବାରମ୍ବାର ଫେରିବା ମଝିରେ
କୃଷ୍ଣ ଯବନିକାଟିଏ ।

ନେପଥ୍ୟକୁ ଯାଇଥିବା ନଟନଟୀ
ଆସୁଥା'ନ୍ତି ଏ ମଞ୍ଚକୁ ମନେରଖି ଅଭିନୟ
ଯା'ର ଯେତେବେଳେ
ଭିନ୍ନ ଭିନ୍ନ ମୁଖା ଓ ପୋଷାକରେ
ରୋକ୍‌ଠୋକ୍ ତୀବ୍ର ଆଲୋକରେ ।

ହୋଇପାରେ କ'ଣ ଲୀଳାଭିନୟ କେବଳ
ବିନାଶ ଲାଗି ସକଳ ଦୁଷ୍କୃତିର
ଯିବାଲାଗି ପରବର୍ତ୍ତୀ ଦୃଶ୍ୟକୁ ବାରମ୍ବାର
ଆସିପାରେ ଈଷତ୍ ଅନ୍ଧାର ଓ ବଦଳିଯାଇପାରେ
ନାନାଦି ସଙ୍ଗୀତ ।

ମେଘର ଭାବାବରଣ ପାରହେଲେ
କାନ୍ଦ ଶୁଭେ ନାହିଁ ଆଉ ଚକ୍ରଆ ଚକୋଇର
ମୋହ ଆସେ ମୋହ ଭାଙ୍ଗେ
ଫରକ ନ ଥାଏ କିଛି ବିରହ ଓ ମିଳନ ଭିତରେ ।

Digitized by PPRACHIN/SOA

୧୬- ନେତ୍ରୋତ୍ସବ

ସେ ମଧୁର ସଂକୀର୍ତ୍ତନ
ନିବିଡ଼ ରସାଭିନୟ
ଅହୋରାତ୍ର ଚାଲେ
ଶତଦଳ ପାଖୁଡ଼ା ଉପରେ
ଅଷ୍ଟକାଳ ।

ନିଜ ଲୀଳା ନିଜେ ଦେଖ
ନିଜ ରସ ନିଜେ ପିଅ
ହେ ମହାନ୍ ରସିକ ଦର୍ଶକ
ମିଛ ସତ ତୁମ ପାଖେ ହୁଏ ଏକାକାର
ହିରଣ୍ମୟ ପାତ୍ର
ଓ ଆଚ୍ଛାଦିତ ମୁହଁ ବି ।



Digitized by PPRACHIN/SOA

# ପ୍ରହସନ

ଆଗରୁ ଜାଣିଛି ସବୁ
ଯାହା ହେବ ନାଟକର ପରିଣତି
ହସ କାନ୍ଦ ମୁଦ୍ରା ସବୁ ଧରି
ସୁଆଙ୍ଗ ଓ ପ୍ରହସନ ଚାଲିଥିବ
ଚାଲିଥିବ ମୁଣ୍ଡପିଟା ହାତକୋଡ଼ା ପଥର ଛାତିରେ ।

ମୁହଁରେ ରୁମାଲ ଧରି
ଦେଖଣାହାରିଏ ଦେଖୁଥିବେ
ହସୁଥିବେ ଲୁହ ପୋଛୁଥିବେ
ତାଳିପକା ପୋଷାକରେ ବିବର୍ଣ୍ଣ ପଦକ ଧରି
ସୁଖଦୁଃଖ ଗୁଛାହୋଇ ଝୁଲୁଥିବ ।

ମୋର ବୋଲି ଘୋଷଣା କରିବା ମାତ୍ରେ
ଆଉ କେ ଛଡ଼ାଇ ନେବ ପାନପାତ୍ର
ସବୁ ଲୁହ ସବୁ କୋହ ସବୁ ମୋହ
ଶୋଷିନେଇ ଶୂନ୍ୟକରି
ଚୂରମାର କରିଦେବ
ସବୁ ସ୍ୱପ୍ନ ।

ଏ ମଞ୍ଚର କାଚଭର୍ତ୍ତି ଚଟାଣରେ
ରକ୍ତାକ୍ତ ହେବାକୁ ମତେ ଏକା ଛାଡ଼ିଦେବ
ବିନ୍ଦୁଏ କାକର ନେଇ ସକାଳ ଆଖିରେ
କେତେବେଳ ସୂର୍ଯ୍ୟଙ୍କୁ ଚାହିଁହେବ
କେତେ ବା ସମୟ ଏହି ଦୃଶ୍ୟ ଥିବ
ଆଲୁଅ ନ ଥିବ ।

Digitized by PPRACHIN/SOA

ସେ କେଉଁ ଅଭିନୟ
ପରସ୍ପରକୁ ହଜେଇ ଏପରି ମାତାଲ ହେବା
ଶୂନ୍ୟକୁ ହାତ ଟେକି ନିଃସ୍ୱ ହେବା
ନାଚି ନାଚି ପୁଣିଥରେ ରାସ୍ତାରେ ଚାଲିବା
ଲୋକହସା ହେଉ ହେଉ ଲୋକଙ୍କୁ ବିଭୋଳ କରି
କୀର୍ତ୍ତନ କରିବା ।

ଏତେସବୁ ପଟାପଟି ପରେ
ସତେ କ'ଣ ଆମେ ଏକ ହେବା
ବିନ୍ଦୁ ବିନ୍ଦୁ ଜଳ ହୋଇ
ଶୂନ୍ୟରୁ ଝରି ଝରି ସତେ କ'ଣ
ସିନ୍ଧୁ ପାଲଟିବା ।

କିବା ଦଲକାଏ ପବନର ଇଚ୍ଛାମତେ
ଚାମର ପକାଉଥିବା ରୀତିମତ
ଅନୁଗତ ଢେଉଭଳି ବେଳାଭୂଇଁ ପରେ
ମାତୁଥିବା ପୋଷା ମାନି ପାଦତଳେ
ଗଡ଼ିଯାଉଥିବା
ଆଉ କ'ଣ ବାରିହେବ ପବନରେ
ଉଷ୍ମତା ମୋ ନିଃଶ୍ୱାସର
ଯାହାସବୁ ସାଇତିଛି ଗହଳିରୁ ଭିନ୍ନ ହୋଇ
ବସିରହି ହାତପାତି
ମେଘନାଦ ପାଚେରି କଡ଼ରେ ।

□□□

Digitized by PPRACHIN/SOA

# ପୁନରୁଦ୍ଧାର

- ଏକ -

ଶିଶୁଟି ବା କରିବ କ'ଣ
ବେଳ ଅବେଳରେ
ଜେଜେମା' ପଣତ ଧରି ପଶିଗଲେ
ଚିତ୍ରିତ ଜଗମୋହନକୁ
ଦେଖିବ ତୁମକୁ ।

କେତେବେଳେ ଲୁଗା ବଦଳାଅ
କେତେବେଳେ ମଣ୍ଡାଫୁଲରେ ନିର୍ମାଣୁଥାଅ
ମୁଖମଣ୍ଡଳ ।

ଆମେ ଅନେକ ଥାଉ ଗର୍ଭଗୃହରେ
ଚିହ୍ନି ନ ଥାଉ ପରସ୍ପରକୁ
ଚିହ୍ନିଥାଉ କେବଳ ଜଣକୁ
ଜନ୍ମରୁ ପରିଚିତ ସେ ପୁରୁଖାଲୋକ
ଯେ ଆମର ମୁରବି ହୋଇ ସବୁ ବୁଝିଥାଏ
ଓ ଶୋଇରହେ ଜଳନ୍ତା ଅଙ୍ଗାରର ଶେଯରେ
ଯେ ହଜିଯାଇଥାଏ ନିଜ ଦେହରୁ
ସତେ ଅବା ପିତୃପିତାମହ ।

ତାଙ୍କ ବିଭିନ୍ନ ସମୟର
ସମ୍ପର୍କ ଓ ଅଭିଜ୍ଞତା
ଯାହାବା ବିବୃତ ହୁଏ କଳ୍ପବଟ ମୂଳେ
ଅବା ପିପ୍ପଳ ଛାଇରେ
ଆମେ ଜାଣୁ ସମସ୍ତ ସଚିତ୍ର ଅବତାର ପରେ
ସେ ନେଇପାରନ୍ତି ଶେଷ ଅବତାର ।

Digitized by PPRACHIN/SOA



ସେହି ଆତ୍ମୀୟତାର ସୂତ୍ରରେ
ସେ ଏଠି ଆତଯାତ ଯାତ୍ରା ପରବରେ
ଯଦିଓ ସେ ରହୁଥା'ନ୍ତି ସମୁଦ୍ରକୂଳର
ଏକ ନିଶବଦ ଘରେ ।

ସହଜେ ତ ମେଘନାଦ ବାନ୍ଧିରଖେ
ପଥର ପ୍ରାଚୀର
ସମୁଦ୍ରର ସବୁ ସ୍ୱର ଶୋଷି ନେଉଥା'ନ୍ତି
ସ୍ୱୟଂ ପବନକୁମର ।

ସେ ନ ଥିଲେ
ଆମେ ଆସନ୍ତୁ ନାହିଁ ଯାତ୍ରା ପରବରେ
ଅବଶ୍ୟ ସେ ଆଦୌ ନ ଥାଇ
ରହିଥା'ନ୍ତି ସକଳ କାରୁକାର୍ଯ୍ୟରେ
ଖୁସି ହୋଇ ଆମରି ସେବାରେ ।

ବେଶ ପୋଷାକ ପିନ୍ଧି
ରଥରେ ବୁଲି ବୁଲି
ଫେରିଆସନ୍ତି ହସି ହସି
ମଣୋହିକୁ ଛପନଭୋଗକୁ ।

- ଦୁଇ -

ଶୂନ୍ୟକୁ ପୂର୍ଣ୍ଣ କରିବାର ଯାଦୁଖେଳ
ଜଣା ଆମକୁ
ଆମ କୁହୁକ ବିଦ୍ୟାରେ ସେ
ସଦା ଚଳ ଚଞ୍ଚଳ ।

କିଣାବିକା ଭୋକଶୋଷର ସଂସାରରେ
ନିଦରେ ଟାଳଇ ସେ ଅଝଟିଆ
ସ୍ୱପ୍ନରେ ଭାସଇ ।

Digitized by PPRACHIN/SOA

ସଦାସର୍ବଦା ତା' କୂଳକୁ
ମୁଁ ଲଗେଇରଖିଥାଏ ନାହା
କାଳେ ସେ ଫେରିପାରିବନି ଚକ୍ରବ୍ୟୂହରୁ
କାଳେ ସେ ରାତିସାରା ଠିଆହୋଇ ଦଧିନଉତିରେ
ଡେଇଁପଡ଼ିବ ଗଣ୍ଡଦେଶକୁ ପଦ୍ମତୋଳାର
ମୁଣ୍ଡି ମାରିଲା ପରେ ।

ଯେ ଜନ୍ମ ଦେଇଛି କୀର୍ତ୍ତିକୁ
ଇତିହାସ ପାହାଚ ତଳେ ବସିଥିବ ସେ
ଘାସଭଳି ଗିଳିଦେବାକୁ ।

- ତିନି -

ତଥାପି ଖେଳରେ ଖେଳରେ ଶିଶୁଟି
ସଜେଇଥାଏ ତମକୁ
ଚଳେଇନିଏ କୁନିଶଗଡ଼କୁ
ବଡ଼ବଡ଼ୁଆଙ୍କ ଶଗଡ଼ଗୁଳାରେ ।

ସିପ ଶାମୁକାରେ
ବାଲିରେ ବାଲିରେ ଗଢୁ ଗଢୁ ବିଗ୍ରହ
ସେ ଶୋଇ ପଡ଼ିଥାଏ ସମୁଦ୍ରବେଳାରେ
ତାରାଭର୍ତ୍ତି ଚାନ୍ଦୁଆ ତଳେ
ଗଢୁ ଗଢୁ ଫୁଲର ନଅର ।

ସେ ଶିଶୁର ଅସଜଡ଼ା କେଶଗୁଚ୍ଛକୁ
ସଜାଡୁଥିବା ପବନ
କେମିତି ଛାଡ଼ିଦେବ ତାକୁ
ସ୍ଫୁଲିଙ୍ଗ ଉଗାରୁଥିବା ଉର୍ମିର ଜିହ୍ୱାକୁ ।

Digitized by PPRACHIN/SOA

ଯଦି ଏତେ ଜ୍ୟୋତି
ଗୋଟେ ଭୂତାଣୁ ଭିତରେ
ଏତେ ନୀଳ
ବଜ୍ରର ସଂଘାତରେ
ଇରମ୍ମଦ ଦ୍ୟୁତି ।

ଯଦି ବିଷଧର ମୁଣ୍ଡେଇ ଚାଲେ
ତା କଠଉ
ତାକୁ ଜନ୍ମ ଦେଇଥିବା ଇତିହାସ
କେମିତି ଲୁଚେଇବ ତାକୁ ଅନ୍ଧାରର
କୋଇଲା ଗର୍ଭରେ
କେମିତି ନ ଦେବ ତାକୁ
ତା'ର ହୀରକ ବିଗ୍ରହ ।

❑❑❑

Digitized by PPRACHIN/SOA

# ଶାଳଗ୍ରାମ

ଏଇଠି ଥାଇ କୁଆଡ଼େ ଗଲୁ
ଥିଲୁ ତ ଥିଲୁ କା'ର କ'ଣ କରୁଥିଲୁ
ଜୀଅନ୍ତା ପଥର ମୋର ।

ପାହାଡ଼ ଲୁହରେ
ନୟନଯୋଡ଼ି
ଉଦ୍‌କୂଳ
ଢଳଢଳ ।

ଆହା ଖସିପଡ଼ିଲୁ ଯାହା
ନ କହି ନ ପୁଛି
ଦେହର ଗହନରେ
ଶୀତପତ୍ର ।

ନେଲୁ ନାହିଁ ଦେଲୁ ନାହିଁ
ବଢ଼ାଇଲୁ ଅନ୍ଧାରର ମେଦମାଂସ
ମୁର୍ଦ୍ଦାରର ଖତକୀଟ
କଙ୍କାଳର ବୀଜ
ପୂର୍ଣ୍ଣ କରେ ଏ ମାଟିର ଗର୍ଭ ।

କେଉଁ ଗଣ୍ଡୁକୀର କାମନାରେ
କୋଳପୂର୍ଣ୍ଣ କରିବାକୁ
ଚାହିଁଥିଲୁ ।

ସଂଖ୍ୟାହୀନ ଦେବଶିଶୁଙ୍କୁ
ଯେ
ପାଲଟିଗଲୁ ସ୍ୱୟଂ
ଶୋଣିତର ନଦୀ ।

Digitized by PPRACHIN/SOA

ହେ ମୋର ଯୁଗ ଯୁଗ ସଭ୍ୟତାର
ସ୍ୱେଦକୁମାରୀ
ଖସିବୁ ଖସିବୁ ହୋଇ ପାଲଟିଲୁ
ସ୍ଫଟିକର କନ୍ୟା ସୁକୁମାରୀ ।

ଏତେ ବଡ଼ ଅଧିକାର
କାହିଁ ତୋର ମାତୃତ୍ୱର
ସହସ୍ର ଛିଦ୍ରରେ କାଟୁଛନ୍ତି ବକ୍ଷ ତୋର
ବଜ୍ରକୀଟ
ଅଭିଶପ୍ତା ନଦୀର ଅସତ୍ ଗର୍ଭରେ ।

❑❑❑

[ଅଭିଶପ୍ତା ହସ୍ତୀ ଓ କୁମ୍ଭୀରଙ୍କ ଶବରେ ବଜ୍ରକୀଟ ପ୍ରବେଶ କରନ୍ତେ ସ୍ୱେଦକୁମାରୀଙ୍କ ପାଷାଣଗାତ୍ରକୁ ଶତଛିଦ୍ର କରି ଗଢ଼ିଲେ । ତଦ୍ଦ୍ୱାରା ଶାଳଗ୍ରାମ ଛିଦ୍ରଯୁକ୍ତ ହେଲେ ।]

Digitized by PPRACHIN/SOA

# ନିଷିଦ୍ଧପୁରୀ

ସେ ଦୁହେଁ ଲଳିତା ବିଶାଖା ଭଳି
ଆସନ୍ତି ନିଶାର୍ଦ୍ଧରେ
ଘର ଚାରିପାଖେ ଘୂରୁଥା'ନ୍ତି ଦୁଇଟି ଦୀପଶିଖା ।

କି ଜୀବିତ କି ମୃତ ସମସ୍ତେ ବାରଣ କରନ୍ତି ମତେ
କାଳେ ତାଙ୍କ ଇସାରାରେ ବାହାରିଯିବି
ଅଭିସାର ରଚିବାକୁ ନିଷିଦ୍ଧପୁରୀରେ ।

ମୁଁ ଗଲେ ଅନ୍ଧାରରେ ଯିବି
ମାହାର୍ଦ ଖପରାର ସ୍ତୂପ ଉପରକୁ ଉଠି
ଉଙ୍କିମାରି ଦେଖିବି ।

ମେଘନାଦ ପାଚେରି ଆରପାଖେ
ଏହିପରି ଅନ୍ଧାର
ନ ଦିଶୁଛି ଗଛବୃଛ କିଛି
ଏପରିକି ଶ୍ମଶାନ ତୁଳସୀ ।

ସେ ଦୁହେଁ ଦୁଇଟି ଦୀପଶିଖା
ଜଳୁଛନ୍ତି ଆଗେ ଆଗେ
ଗୌରାଙ୍ଗୀ ସୁବର୍ଣ୍ଣଲତିକାର ଉଲଗ୍ନ ହାତରେ
ଅର୍ଥାତ୍ କେବେ ତଡ଼ିତ୍‌ଲତାର ତ
କେବେ ଧୂମଶିଖାର ।

ବହୁ ସହଚରୀ ଖଦ୍ୟୋତ ଭଳି
ଶ୍ୟାମା ଓ ଗୌରୀ
ମାନମୟୀକୁ ଘେରି ନାଚନ୍ତି ଘୂରନ୍ତି
କୋଇଲି ବୈକୁଣ୍ଠରେ ।

Digitized by PPRACHIN/SOA

ସମସ୍ତେ ଖୋଜନ୍ତି ମାଟିତଳେ
ପୋତା ଦାରୁବ୍ରହ୍ମର ଚେର
କାଳେ ବାସିଚନ୍ଦନ ଲାଗିଥିବ
ତୁଳସୀ ଦୟଣା ବାସୁଥିବ ।

ମାତ୍ର କଞ୍ଚାମାଟିର ଗନ୍ଧରେ
ଲୁଚି ଯାଇଥାଏ ତା'ର ମହକ
ତା'ର ଚେର ତ ଥାଏ ଶୂନ୍ୟରେ
ଶାଖାପ୍ରଶାଖାରେ ଛନ୍ଦାୟିତ ଜଗତ
ଯେ ଏଠି ଥିଲା ଚନ୍ଦ୍ରର ଛାଇ ଭଳି
ସ୍ୱଚ୍ଛ ସରୋବରେ ।

ବୃକ୍ଷ ସେ' ତ ସ୍ୱୟଂ ଅବିନାଶୀ
ସତ ଯେତେ ମିଛ ସେତେ
କ୍ଷୟ ଯେତେ ଅକ୍ଷୟ ବି ସେତେ
ନଚେତ୍ ବିନା କାରଣରେ ଏଠି ଚାଲିଥା'ନ୍ତା
ସମୀଧରେ ଯାଗଯଜ୍ଞ ଏତେ ରଥଯାତ ।

ଯେଉଁମାନେ ନାହାନ୍ତି
ଯେଉଁମାନେ ଅଛନ୍ତି ଏ ହୈମନ୍ତୀ ନିଶିରେ
କୁଆଁତାରା ଭଳି ହସୁଥିବେ
ଅଗଣିତ ପ୍ରତିରୂପ ଦେଖି ଦେଖି
ଆକାଶ ଦୀପରେ ।

❑❑❑

Digitized by PPRACHIN/SOA

# ବିଜୁଳିକନ୍ୟା

ସେ ଏପରି ଶିଶୁ ଯେ ଧରାଦେଇ ବି
ଧରାଦିଏନି ମରଣର ଲୌହମୁଷ୍ଟିରେ
ସେ ଶିଶୁ ଆକାଶକୁ ଉଡ଼ିଯାଏ ଦାନବୀୟ
ହାତମୁଠାରୁ ।

ବିଜୁଳିଗାରରେ ଲେଖାଥାଏ ତା'ର ଅକ୍ଷତ ଯୌବନ
ସେ ପୂର୍ଣ୍ଣଯୌବନା ଦେବୀ ଆକାଶରେ ହସୁଥାଏ
ତା' ହସର ଦମ୍ଭୋଳି ଦୁନ୍ଦୁଭି
ସତର୍କ କରିଦିଏ ଯେ
ତତେ ସାଧିବାକୁ ଥିବା
ଆଉ ଏକ ଦିବ୍ୟଶିଶୁ
ଆସୁଛନ୍ତି ପଛେ ପଛେ ମୋର ।

ସେ ଡେଇଁଯାଇଛି ଜନ୍ମରୁ ଜନ୍ମାନ୍ତର
ଭାସି ଭାସି ଦୁସ୍ତର ସାଗର
ସହୋଦରା ସେ ଶୋଣିତଦେହୀ
କାଞ୍ଚନବର୍ଣ୍ଣା
ସେ ନେଇଛି ଟିକେ କଳା ଗୋଟିଏ ଭାଇଠୁ
ତ ଧଳାଟିକିଏ ଆରଭାଇଠୁ ।

ସେ ରଜସ୍ୱଳା ଧରଣୀ
ହରିତକୀ ଆଦିମାତା
ଜନ୍ମଦେଇ ସଂହାର ଓ ପାଳନକର୍ତ୍ତାଙ୍କୁ
ନିଜେ ପାଲଟିଛି ସୃଜନସମ୍ଭବା
ଭଗିନୀ ଜନନୀ ଜାୟା
ସେ ଯେ ଯୋଗମାୟା
ସେ ଲଗେଇଦିଏ କିମିୟା

Digitized by PPRACHIN/SOA

ବଇଁଶୀରେ, କଦମ୍ବରେ
କାନୁ-ଓ ଅଧରରେ
ବ୍ରହ୍ମ ସ୍ୱାଦ ।

ସେ ଫେରେଇଦିଏ ସେ ସ୍ମୃତି
ବାତ୍ସଲ୍ୟର
ଯୌବନର
ବୈରାଗ୍ୟର
ସକଳ ମାଧୁର୍ଯ୍ୟ ଜୀବନଲୀଳାର ।

ତା'ର ପ୍ରତିଫଳନ ନ ଥାଏ
ସେ ବି ନୁହେଁ ମୃତ ଇନ୍ଦ୍ରିୟର ପ୍ରତିକୃତି
ସେ ମୂଳରୂପା ଆଦିମ ପ୍ରକୃତି ।

ସେଠି ଥାଏ ଶୂନ୍ୟଦେହୀ ଅଜର ଅମର
ଏଠି ଥାଏ ରକ୍ତମାଂସ ଅନିତ୍ୟ ନଶ୍ୱର ।

ସେ ଦର୍ପଣଶିଳାକୁ ନେଇ ପଡ଼ିରହେ
କାରାଗାରେ
ଲହ ଲହ ଲହୁସିକ୍ତ ବିଗ୍ରହରେ
ଉଡ଼ିବୁଲେ
ଜିହ୍ୱା ମେଲି ମୁକ୍ତ ଆକାଶରେ ।

ସେ ସକଳ ଅଭିଶାପକୁ ବରଣ କରି
ବାରମ୍ବାର
ଆପଣାର ସ୍ରଷ୍ଟାପଣରେ
ପାଲଟିଯାଏ ସ୍ୱୟଂ ସୃଷ୍ଟି
ସଚିତ୍ର ପ୍ରଜାପତି ।

❑❑❑

॥ ୨୦୦୪ ପୂଜାସଂଖ୍ୟା 'ବିଶ୍ୱମୁକ୍ତି'ରେ ପ୍ରକାଶିତ ॥

Digitized by PPRACHIN/SOA

# ବୋଇତ ଭସାଣ

କଦାପି ଦେବପୁରୁଷଙ୍କ ମୁହଁ ଭଳି
ଉଜ୍ଜ୍ୱଳ ଦିଶେନା ସମସ୍ତ ଦିବସ
ଭୋର ଆସେ ରୂପସବୁ ବିବର୍ଜିତ
ବିସର୍ଜିତ ଛାଇମାନେ ଅଧୈର୍ଯ୍ୟରେ
ପିଟୁଥା'ନ୍ତି ମୁଣ୍ଡ ।

କୁହୁଡ଼ିରେ ଶରବିଦ୍ଧ ହଂସ
ତୀକ୍ଷ୍ଣ କିରଣରେ ଶିଖା ଥରେ
ମ୍ଳାନ ସରୋବରେ
ଦରଭିଜା କାଗଜ ଡଙ୍ଗାରେ
ଭଙ୍ଗାମନ ଉପକୂଳେ ହାବୁକାଏ ସାନ୍ତ୍ୱନା
ଏ ସ୍ମୃତି
ଜଳୁଥାଏ ରସବତୀ
ସାରାରାତି ଯାଉଥାଏ ବିତି ।
ଆମେ ସାରିଦେଇଛେ ଯେତେ ଯାହା ସଉଦା ଏଠାର
ଦୂର ଦେଶ ଯିବାପାଇଁ ସାଧବ ବେପାର ସବୁ ନାଲିନେଳି
କାଗଜ ଡଙ୍ଗାର ।

ଅତୀତର ସ୍ମୃତି ଆଉ ଫୁଟେଇ ପାରେନା
ତା'ର ଚକମକି ଫୁଲ
ଆକାଶ କୁସୁମ ନୁହେଁ ସ୍ୱପ୍ନ ଆମ
ସେ ତ ନିଆଁ ଝୁଲ ।

❑❑❑

Digitized by PPRACHIN/SOA

# କପିଳେଶ୍ୱରପୁର

ଭଉଁରୀକୁ ଆସିବେ ଆଜ୍ଞା
ଏକୋଇଶ ଦିନ ଚନ୍ଦନକୁ
ଏକୋଇଶ ପ୍ରକାର ଗୀତ
ଆମ ଗାଁ ଚାପରେ ବୋଲାହେବ
ଖାଣ୍ଟି ଓଡ଼ିଶୀ ।

ଏବେ ସଂଧ୍ୟାରେ ନାମାମୃତ
ପାନ କରନ୍ତି ଆମ ଗାଁ ଲୋକେ
ଗାଡ଼ିରେ ଆସନ୍ତି ଜଣେ ଦଣ୍ଡୀ ସନ୍ନ୍ୟାସୀ
ଆଉ ଜଣେ ଗୃହତ୍ୟାଗୀ ଧନପତି
ଧଳାଧୋତି
ସୁନା ଚଷ୍‌ମା
ଅଳ୍ପ ଦାଢ଼ି ।

ଏ ବର୍ଷ ଭୋଟ୍‌ରେ ହାରିଯାଇଥିବା
ମଦୁଆ ସରପଞ୍ଚ
ଅତିବଡ଼ୀଙ୍କୁ ଚାହିଁ ଆରମ୍ଭ କରେ
ଦୋ ଅକ୍ଷରୀ
ଖଣ୍ଡେ ନୋଟ ଡ୍ରାଇଭରଠୁ ନେଇ
ସନ୍ନ୍ୟାସୀଙ୍କ ଇସାରାରେ ପଳାଏ
ଲାଙ୍ଗୁଡ଼ ଜାକି
କିଆବୁଦା ଗୋହିରୀରେ ।

ଭଗବାନ୍‌ଙ୍କ ଭଳି
ଆଶୀର୍ବାଦ ବିଛେଇଦିଏ ସନ୍ନ୍ୟାସୀ ଦୁହିଁଙ୍କୁ
ମୁନ୍ଦେ ପିଇ ଆସିଲା ପରେ ।

Digitized by PPRACHIN/SOA

ଆଳତି ଚାଲିଥାଏ
ରାଧାକୃଷ୍ଣଙ୍କ ମୂର୍ତ୍ତି ବସ୍ତାରେ
ବୁହାହୋଇ ଗଲାବେଳେ
କିପରି ଧରାପଡ଼େ ଭାର୍ଗବୀ ବ୍ରିଜ୍ ଉପରେ
ଏବଂ ତାଙ୍କ ମହିମାଠୁ
ଚୋରଙ୍କୁ ନିସ୍ତୁକ ପିଟିବାର
ଧାରା ବିବରଣୀ ଦିଏ ପୂଜାରି

ଭାଗବତ ପଢ଼ା ଚାଲିଥାଏ
ସନ୍ୟାସୀ ଦୁହେଁ ଧଳା ମାରୁତିରେ
ଫେରିଆସନ୍ତି ପୁରୀ ।

❑❑❑

Digitized by PPRACHIN/SOA

# ଯାତ୍ରାଦାଣ୍ଡ

କିଛି ତ ହୁଏ ଦିବ୍ୟଜ୍ଞାନ
ରାତିସାରା ପ୍ରବଚନ ନାମ ସଂକୀର୍ତ୍ତନ
ରଥ ଏ ଯାଏଁ ଭାଙ୍ଗିନି
ରଥ ସଜା ହୋଇଥାଏ କାଉଡ଼ିଆଙ୍କ
ରଙ୍ଗିନ୍ ଜଳବାହୁଙ୍ଗାରେ
ସେମାନେ ଶୋଇପଡ଼ନ୍ତି ଉଲଗ୍ନ
ରଥ ଉପରେ ।

କେହି କେହି ଗେରୁଆ ବାଘଛାଲ ପୋଷାକରେ
ଚିତ୍ରିତ ରଥଚକକୁ ଆଉଜି ଘାଲେଇ ପଡ଼ନ୍ତି
କୋଳରେ ପରସ୍ପର
ଆଣ୍ଠୁ ଜାକି ।

ସେମାନେ ଫେରିଥାଆନ୍ତି
ବାଲିଲୋକନାଥଙ୍କୁ ଜଳଶାୟୀ କରି
ମହାପ୍ରସାଦରେ ପେଟ ପୂରେଇ
ରଥ ଯାଇ ଝୁଲଣ ଆସେ
ଗୋଟିପୁଅ ବସଣି ପିନ୍ଧେ
ବନ୍ଧ ଭାଙ୍ଗେ ।

ପରେ ପରେ ଗଣେଶ ଯାତ
ନିଶୁଆ କନ୍‌ଷ୍ଟେବଲ୍ ଘରକୁ
କୁଣିଆ ଆସନ୍ତି ଆଠମଲ୍ଲିକରୁ
ପଛକୁ ପଛ ଦଶହରା
ସୋଳ କାମ ଜରି କାମ
ମୃଣ୍ମୟୀ ଦାଉ ଦାଉ ଜଳନ୍ତି ।

Digitized by PPRACHIN/SOA

ଖଁଗା ମଞ୍ଜିରା ବେସର
ମହକେ
ଚଢ଼ାଉ କରେ ଫୁଲର ତଡ଼ାଉ ଉପରେ
ପଶୁଙ୍କ ତାଜାରକ୍ତରେ ଲେଖାହୁଏ
ବିଜୟା ।

ମେଳାର ଲୁଳୁଲୁଳିଆ
ବ୍ୟବସାୟୀଙ୍କ ଆଖିରେ
ବାହାରବୁଲାଙ୍କ ଆଖିର ଗୁଲୁଗୁଲିଆ
ନିଶାରେ ।

କ'ଣ ସେ ଲମ୍ୱେଇଛି କି ପୁରାଣ
କେତେ ଦେଶୀ ବିଦେଶୀ
ଆସନ୍ତି ଯାଆନ୍ତି ଢେଉଭଳି
ବୁଝିଲୁ ବାଇ ସମୁଦ୍ର
ଯିବୁ
ନା ବାଣୀ ଶୁଣିନୁ
କହିଲୁ
କୋଉଠି ଦୃବଚକଡ଼ା
କହିପାରିବିନି
ତମେ କହିଲ କୋଉଠି ଯୋଡ଼ିହୁଙ୍କ
ହଁ ସେଇଠି ।

ଆଉ ମଣି ଜାଣିଲନି କ'ଣ
ଛ ମାସର ପିଲା
ଦେଉଳକୁ ଯାଉଛି
କ'ଣ ଖାଇଲୁ କି କହିପାରିବୁନି
ତଣ୍ଟିରେ ନିଶ ବାଜୁଛି
କି ଚୁଙ୍କୁଡ଼ି
ନାଇଁ ନାଇଁ ଛେନା

Digitized by PPRACHIN/SOA

କ'ଣ ହେଲା ଗାଳି ଫଇଜତ୍
ଶୁଭୁଛି
ନା ମାଡ଼ ବାଜି କିଛି ଶୁଭୁନି ।

ମାହାର୍ଙ୍କେ ଏମିତି ଅଛି କୋଉ
ଫାଇଭ୍‌ଷ୍ଟାର
ଲକ୍ଷେ ଲୋକ କରିପାରନ୍ତି ଏକା ସାଙ୍ଗେ ଆହାର
ଷଣ୍ଢମାନେ ପହରା ଦିଅନ୍ତି
ଗଳି ଗଳି ସାହିମାନଙ୍କରେ
ଗହଳି ବୁଲିଗଲେ ବଡ଼ଦାଣ୍ଡରୁ ସମୁଦ୍ରକୂଳକୁ
କୌଣସି ସ୍ନାନଯୋଗରେ
ଝିଲ୍ଲୀ ଛଣାହେଲା ପରି
ଚିଡା ପଡ଼ିଲା ଭଳି
ଠା ଠା ପିମ୍ପୁଡ଼ିମିତି ଲୋକ ।

ଖାଁ ଖାଁ ଭିତର
ଲୋକଉତ୍ସବରେ ସଂସ୍କୃତି
ବନ୍ଧ ଭାଙ୍ଗେ ଗୋଟିପୁଅ
ଚାରିପାଖୁ ନଇଁଆସେ ମୁଣ୍ଡ ମୁଖାପିନ୍ଧା ଦାନବର ।

ନେତ-ଓଷାର କୁଆଁରୀ ଝିଅ
ଘୋଷୁଥା'ନ୍ତି ବଳିଗୀତ
ଦେଖୁଛନ୍ତି କି ନା ମାହାରୀ ନାଚ
ଶୁଣିଛନ୍ତି କି ନାହିଁ ଭିତର ଗାଏଣୀର
ଗୀତଗୋବିନ୍ଦ
କାନ୍ଦ କାନ୍ଦ ହୋଇ ଶୀତରେ ।

ୟେସ୍ ପାପା ଶିଖୁଥିବା
ଏଲ୍.କେ.ଜି.ର ପିଲାମାନେ ଆମ ପରି
ଜାତୀୟଗୀତ ଗାଇ ଯାଉ ନାହାନ୍ତି ଗଭର୍ନର୍ କୋଠିକୁ
ନୀଲେ ରଙ୍ଗକୀ ପ୍ୟାରା ପ୍ୟାରା
ଝଣ୍ଡା ଉଁଚା ରହେ ହମାରା ।

Digitized by PPRACHIN/SOA

ରାତିସାରା ଭେଜାଲ ଭଜନ
ଗହଳ ଚହଳ
ଧନ୍ୟ ସେହି ନାରୀ
କରାନ୍ତ୍ର ଦନ୍ତପଲଙ୍କ ତେଜି
ପ୍ରଭୁ ଚନ୍ଦନଚାପକୁ ଗମନ କଲାଭଳି
ଫେରୁଥା'ନ୍ତି ପାହାନ୍ତାରେ କାକସ୍ନାନ କରି
ଲୋଡ଼ସେଡ଼ିଙ୍ଗ୍ ଗ୍ରୀଷ୍ମରଜନୀରେ
ଲମ୍ବା ସମୁଦ୍ରର ରାସ୍ତାରେ ।

ଏକା ଖୋଲା ଥାଏ ଏ.ଟି.ଏମ୍.ର ଶୀତଳଘର
ବାର୍‌ଲାଇଟ୍ ସବୁ ବଗଭଳି ଉଡ଼ିଗଲା ପରେ
ଫେରିଆସିବ ଟ୍ରଲର୍ ବା ପାଲଟଣା ନାହାରେ
କଳିଙ୍ଗକୁମର ।

ଫୁର୍‌ରୁ
କ'ଣ ନେଇ ଉଡ଼ିଗଲା ବଗୁଲୀ
ଆଲୁଅ ନା ଅନ୍ଧାର ।

❑❑❑

Digitized by PPRACHIN/SOA

# ତୀର୍ଥାଶ୍ରୟ

ବାଲିବନ୍ଧ ଡେଇଁଲେ ସମୁଦ୍ର
ସୀମା ସରହଦ ମଝିରେ
ଅଳ୍ପସଂଖ୍ୟକ ଝାଉଁଗଛ
ମୁହାଣଠୁ ମୁହାଣ ଭିତରେ
ବାଲିଦ୍ୱୀପ ।

ମଲାକୁରୁମଟିକୁ ଦେଖୁଥିବା ସନ୍ୟାସୀ
ପିଠିକୁ ତା'ର ଆଉଁଶୁଥିବା ଧୀବର
ଚାହାନ୍ତି ପରସ୍ପର ଚୁପ୍‌ଚାପ୍
ସତେ ଅବା ସେ କପାଳ
ଧରିତ୍ରୀ କନ୍ୟାର
ପୃଷ୍ଠଦେଶ କୁଳପର୍ବତର
ତଳେ ସେ ଧରଣୀଧର ।

ସହରର ସବୁ ବିଷ ସମୁଦ୍ରକୁ
ନାଳରେ ବୋହିଗଲେ
ଢେଉସବୁ ଥୁ' ଥୁ' କରେ
ଆମ ବର୍ଜିତ ପଦାର୍ଥର
ଦୂଷିତ ସଂକ୍ରମଣର ।

ନୀଳକଣ୍ଠ ବିଷବମନ କରେ
କେବେ ବାତ୍ୟା କେବେ ସୁନାମିରେ
ଆମେ ତ ଶରଣାର୍ଥୀ
ସହାବସ୍ଥାନ ଆମ ପ୍ରକୃତି ସହିତ
ନଚେତ୍ ସ୍ୱସ୍ଥାନ ଗମନ
ଯେଉଁ ପୀଠରେ ବା ମଠରେ
ଦଣ୍ଡଧାରୀ ଏ କାଳଶମନ
କିବା ସ୍ୱୟଂ ମହାଶୂନ୍ୟ ।

Digitized by PPRACHIN/SOA

ଦେଶ ଚାଲିଥାଏ ରକ୍ତଭଳି ନିଜସ୍ୱ ଗତିରେ
ଶିରାପ୍ରଶିରା ଓ ଧମନୀରେ
ସିନ୍ଧୁ ଗଙ୍ଗା ବୈତରଣୀ
ଯିଏ ଯେଉଁଠି ସମସ୍ତେ ମିଶନ୍ତି
ଏହି ତୀର୍ଥାଶ୍ରୟର ପ୍ରଶସ୍ତ ଛାତିରେ ।

ଦୂଷିତ ରକ୍ତସବୁ ସେମାନେ ପଠାନ୍ତି
ଶୂନ୍ୟକୁ ଏପରି ସୂତ୍ରରେ
ଯାହା ବିଶୁଦ୍ଧ ଓ ମଧୁର ରସରେ
ହୁଏ ପରିଣତ
ବାରମ୍ବାର ଆମରି ରକ୍ତରେ ।

❑❑❑

।। ୨୦୦୫ ପୂଜାସଂଖ୍ୟା 'କଥା କଥା କବିତା କବିତା'ରେ ପ୍ରକାଶିତ ।।

Digitized by PPRACHIN/SOA

# ଆଜି ବି ସମୁଦ୍ର ଖୋଜେ

*(କବି କୈଳାସ ଲେଙ୍କାଙ୍କୁ ସ୍ୱର୍ଗଦ୍ୱାରେ ଶେଷ ଦର୍ଶନରେ)*

ଆଜି ବି ସମୁଦ୍ର ଏଠି ଖୋଜୁଛି ତମକୁ
ତମେ ଆଉ ଆସିବନି ଦେଖିବାକୁ ସୂର୍ଯ୍ୟୋଦୟ
ଚଷ୍‌ମାରୁ କାକର ପୋଛି ପୁରୁଣାଦିନର
ଅଜଣା ମଣିଷ ପାଖେ ନୂତନ ସମ୍ପର୍କ ଥାପି
ତମେ ଆଉ ଆସିବନି ପ୍ରତି ବର୍ଷ ପରି
ଆମ ପ୍ରମତ୍ତ ସହରେ ।

ସମୁଦ୍ରର ଧଇଁସଇଁ ନିଃଶ୍ୱାସରେ
ବାଲିସବୁ ଉଡ଼ି ଉଡ଼ି ଚାଲିଛନ୍ତି
ନିର୍ଜନ ବଙ୍ଗଳାର ବାରଣ୍ଡାରେ
ବଦଳିଯାଉଛି ପବନ ବି
ସରୁସରୁ ବାଲିର ସାପରେ ।

ପବନ ଏତେ ବେଶି ଆମେତ୍ତନ
କାହିଁକି କେଜାଣି
ଗ୍ରୁପ୍ ଡ୍ୟାନ୍ସ ଦେଖିବାକୁ
ଛୋଟବଡ଼ ଢେଉମାନଙ୍କର
ମୁହାଣ ସାମ୍ନାରେ
ଯେଉଁମାନେ ଖୋଜି ଖୋଜି ହଜିଗଲେ
ମରୁଭୂଇଁ କିବା ବାଲିଚରେ ।

ସେ ଲୁହଧାରକୁ ବେଢ଼ି ଗଢ଼ିଉଠେ ମରୁଦ୍ୟାନ
ହସିଉଠେ ଶାକ୍‌ସବ୍‌ଜୀ ନାନାବିଧ ଫୁଲର ବସତି
ସମୁଦ୍ରରେ ନାହିଁ ଅବା କୋଉ କଥା
ଅମୃତ ମିଳିବାର କଥା
ଦେବାସୁର ସଂଗ୍ରାମର କଥା ।

Digitized by PPRACHIN/SOA

ପ୍ରଳୟ ଓ ସୃଜନର
ମନ୍ଥନ ଓ ବିସ୍ଫୋରଣ
ଅନନ୍ତଶୟନେ ତାଙ୍କ ନାଭିକମଳରେ
ସୃଷ୍ଟି ସ୍ଥିତି ଲୟର ଓଁକାର ।

ବେଦର ଉଦ୍ଧାରଠାରୁ ଅପୋଡ଼ା ପିଣ୍ଡର କଥା
ନାହିଁ କ'ଣ ସମୁଦ୍ରରେ
ଦାରୁବ୍ରହ୍ମ ଭାସି ଭାସି ମୁହାଁଣରେ
ପହଞ୍ଚିବା ଯାଏଁ
ନାହିଁ କେତେ କିମ୍ବଦନ୍ତୀ
ଯାହାସବୁ କପୋଳକଳ୍ପିତ ।

ଇତିହାସରେ ବି ସେମାନଙ୍କର ଆଧିପତ୍ୟ
ଦେବତା ଓ ରାକ୍ଷସର
ଦ୍ୱନ୍ଦ୍ୱର ନାହିଁ ଅବସାନ ।

ଇତିହାସରେ ନାହିଁ ଖାଲି ଚିରନ୍ତନ ପ୍ରେମ
ମାନବିକ ସମ୍ପର୍କର
ଯାହାପାଇଁ ବଞ୍ଚିବା ମରିବା ଆମ
ଜଣାପଡ଼େ ନାହିଁ ।

ଇତିହାସରେ ନାହିଁ
କେତୋଟି ବୋମାର ପରୀକ୍ଷା ହେଲାଣି
କେତେ କୋଟି ଭାସିଗଲେଣି ସୁନାମିରେ
କେତୋଟି ମହାକାଶଚାରୀ ଖସିପଡ଼ିଲେଣି
ଚାଓଲା ସହିତ ।

ପବନକୁ ପୂଜାକରୁଥିବା ନୋଳିଆ
ବୁଝେନି ଇତିହାସ ତା'ଭଳି ସାଧାରଣ ମଣିଷର

Digitized by PPRACHIN/SOA

ଏ ସଭ୍ୟତା ଏ ସଂସ୍କୃତି ଏ ସ୍ଥପତି
ସବୁ ତା' ଶକ୍ତବାହୁର
ଆହ୍ଲାର
ନଉକା ଯାତ୍ରାର ।

ସୂର୍ଯ୍ୟକୁ ଚାହିଁ ନ ପାରି ତମେ କ'ଣ
ଏ ଯାଏଁ ଶୋଇଛ ବନ୍ଧୁ ସମୁଦ୍ରକୁ ଚାହିଁ
ସ୍ୱର୍ଗଦ୍ୱାର
କୋକେଇ ଉପରେ ।

❑❑❑

॥ ୨୦୦୫ ବିଶ୍ୱମୁକ୍ତି ପୂଜାସଂଖ୍ୟାରେ ପ୍ରକାଶିତ ॥

Digitized by PPRACHIN/SOA

# ଏବେ ତୁମେ ଏକୁଟିଆ ଘରେ

*(ଗାନ୍ଧିକ ବିଜୟକୃଷ୍ଣ ମହାନ୍ତିଙ୍କ ଦେହାନ୍ତରେ)*

- ଏକ -

ତମେ ସେବାନିବୃତ୍ତ ହୋଇ
ପୁରୀ ଆସିଲା ପରେ
ଦେଖାହେଲା ମୋ ସହିତ
ଗଡ଼ନ୍ତି ଛକରେ ।

ଦେଖାହେବା ମାତ୍ରେ
ତମର ମନେପଡ଼ିଗଲା
ମୋ 'ଶେଷ ଝୁଲଣ' ଗଳ୍ପରେ
ଗୋଟିପୁଅଟିର କରୁଣ ମୃତ୍ୟୁ କଥା
ସମଲିଙ୍ଗୀ ସମ୍ପର୍କ ଯୋଡୁଥିବା
ଗୋଟେ ଘାତକ ହାତରେ ।

ତା'ପରେ ତମେ ଖୁବ୍ କାନ୍ଦ କାନ୍ଦ ହୋଇ
ଧଇଁସଇଁ ହୋଇ ସାଇକେଲ୍ ଛୁଟେଇ ଚାଲିଗଲ
ଅବଶ୍ୟ ଅଣ୍ଟା ସିଧାକରି ବଡ଼ଦାଣ୍ଡ ପରେ ।

ମୁଁ ଜାଣେ ତମେ ଯାହା ପାଅ
ଭର୍ତ୍ତିକର ଧଳାବ୍ୟାଗ୍‌ରେ
ଦୈନନ୍ଦିନ ସଉଦାକୁ ସୃଜନ ସମ୍ଭାର
କରି ପଠାଅ ।

'ସମାବେଶ' ପତ୍ରିକାକୁ
ପତ୍ନୀଙ୍କ ଭକ୍ତିସ୍ତବକ ସହିତ

Digitized by PPRACHIN/SOA

ଆଉ କେବେ ପାଞ୍ଚଟଙ୍କା ଦେଇ
ତୁମଠୁ ଗଳ୍ପପତ୍ରିକାଟି କିଣେ
ରଙ୍ଗିନ ଛତା ତଳେ ତମେ ବସିଥାଅ ବହିମେଳାରେ
କେବେ ଏକା ତ କେବେ
ଯୁଗଳ ଦତ୍ତଙ୍କ ସାଙ୍ଗରେ ।

- ଦୁଇ -

ପୁରୀରେ ଥିଲେ ତୁମେ କାଠିକୁଟା ନେଇ
ଉଡ଼ିଯାଅ ସେ ନଈବାଙ୍କରେ ଥିବା
କାଁ ଭାଁ ଜଙ୍ଗଲକୁ ।

ତା' ଭିତରେ ତମର ଧବଳ ଉଆସଟିଏ
ଗଢ଼ା ସରିଥାଏ ତମଦ୍ୱାରା କେବେଠୁ
ରାତିଅଧେ ସେ ଧବଳ ଉଆସରୁ ଶୁଭେ
କେତେ ଅନ୍ତରଙ୍ଗ ଭାଷା ଆମ ଦୁହିଁଙ୍କର
ଯେଉଁ ସ୍ୱର ଉଠାଏ ପ୍ରତ୍ୟେକ କବିଙ୍କୁ
ସ୍ୱପ୍ନର ଦୁଆରେ ଆଘାତ କରି ବାରମ୍ବାର
ଧାଉଁଥିବା ରଥମାନଙ୍କର ଘଣ୍ଟିଶବ୍ଦ ଭଳି
ସେହି ସ୍ୱର, ସେ ନିଃସ୍ୱନ ।

ଅଥଚ ସହରର ପରିତ୍ୟକ୍ତ ଅଳିଆଗଦା ଉପରେ
ଧୁ ଧୁ ଖରାର ବାଲିସ୍ତୂପରେ
ଗଢ଼ାହୋଇଥିଲା ଆମ ଦୁହିଁଙ୍କର
ନିଭୃତ ନିଳୟ
ଯାହାକୁ ରାସ୍ତାରୁ ସାଉଁଟି ଦେଇଥିଲ ତୁମେ
ଛୋଟବଡ଼ କଥା ଆଉ ଶବ୍ଦର ଭଗ୍ନାଂଶ ସବୁକୁ
ଏକାନ୍ତ ଗୋପନ ସେ ଇସାରାର
ମାନମନ୍ଦିରକୁ ।

Digitized by PPRACHIN/SOA

ସେ ଗୁଞ୍ଜନ ନାନାରକମର
ରଙ୍ଗବେରଙ୍ଗ ପତଙ୍ଗର
ସେ ଗୁଞ୍ଜନ ନିଭୃତ ଉଚ୍ଚାରଣ
ଢେଉମାନଙ୍କର
ଭାଙ୍ଗିପଡ଼ିବା ଆଗରୁ
ନିର୍ଜନ ବେଳାଭୂମିରେ
ସେ ମଧୁଗୁଞ୍ଜନ କେବେ ହୋଇପାରେନା ମନ୍ତ୍ର
ହୋଇପାରେନା ବି କାହାର ନାମକୀର୍ତ୍ତନ
ସେ ଆମ ମନର ଘର
ନିଶବ୍ଦତାର ଅନାହତ ସ୍ୱର
ଆମ ଧ୍ୱନିଜଗତର ।

ଏବେ ମୁଁ ସେଠାକୁ ଧାଏଁ
ପ୍ରାୟ ନିଶାର୍ଦ୍ଧରେ
ତମେ ସୁନାଜରିର ଦୋସରା ପକେଇ
ମତେ ପାଛୋଟିନିଅ ସେ ଘରକୁ
ଯାହା ଆମେ କଥା କେବେ ହୋଇ ନାହିଁ
ଛକ ଅବା ଜନଗହଳିରେ ।

ସେ କଥା ଚୁପ୍‌ଚାପ୍
ସବୁ ଝର୍କା ଖୋଲିଦେଇ ପବନକୁ କହୁଥାଅ
ଜଣେ କବିଙ୍କ ସହିତ କଥା କହିଲାବେଳେ
କିମ୍ୱା ଗଳ୍ପ ଶୁଣିଲାବେଳେ
ସାବଧାନ ଥିବୁରେ ପବନ
ସମୁଦ୍ରର ଗର୍ଜନ
ଯେମିତିକା
ଚୁପ୍‌ଚାପ୍ କଥା ଆମ
ଭାଙ୍ଗିଦେବ ନାହିଁ ।

❑❑❑

Digitized by PPRACHIN/SOA

# ଭିନ୍ନ ଏକ କଣାମାମୁଁ

ଅପରାଧୀ କିଏ ନୁହନ୍ତି
ନିଜ ନିଜ ମନରେ
ସେମାନେ ବନ୍ଦୀ ହୋଇ ରହନ୍ତି
ନିଜ ଭିତରେ
ରାତାରାତି ଧନୀ ହେବାର
ଘୋଡ଼ାଦୌଡ଼ରେ ।

ତମେ ଖୋଲିଦେଇଛ ତାଙ୍କ ଜେଲ୍‌ର ଚାବି
କାନ୍ଧରେ ହାତ ଥୋଇ ଉପରକୁ
ଅଙ୍ଗୁଳି ନିର୍ଦ୍ଦେଶ କରିଛ
ତମ ପାଟି ବାସୁଥାଏ
କେଉଁ ସୁସଜ୍ଜିତ ବୋଇତରେ ଆସିଥିବା
ଘୁମ ଘୁମ ପୁରୁଣା ମଦରେ ।

ତମେ ଭିନ୍ନ ଏକ ଦାର୍ଶନିକ
ଭିନ୍ନ ଏକ କଣାମାମୁଁ ।

ଏବେ ତୁମେ ଏତେ ଏକା ଯେ
ସ୍ମୃତିସଭା ସମ୍ବର୍ଦ୍ଧନା କବିତାପାଠରେ
ଟି.ଭି. ସମ୍ମେଳନ ଅବା ବ୍ୟଙ୍ଗ ଆସରରେ
ଦେଖିବାକୁ ମିଳେନା ତମକୁ
ତମେ ଶୁଣିପାରନା ଆଉ କାହାକୁ
ଆଜିକାଲି ତମେ ପଢ଼ କେବଳ ନିଜକୁ ।

ତମେ ଏବେ କୋଟ୍ ଖଣ୍ଡିଏ ପିନ୍ଧି
ଭଙ୍ଗା ଦିଗ୍‌ବାରେଣି ଉପରେ ବସିରହୁଛ
ବୁଢ଼ା ଇଗଲ୍ ଭଳି ସମୁଦ୍ରକୁ ଚାହିଁ ।

Digitized by PPRACHIN/SOA

ଦୂରାଗତ କେଉଁ ଜାହାଜଟିଏ
ତୁମ ଇସାରାରେ ଲଙ୍ଗର୍ ପକାଏ
ତୁମ ପାଇଁ ଭେଟି ଓ ପ୍ରଣାମୀ ପଠେଇଦିଏ
ଢେଉର ହାତରେ ।

ତମେ ସେ ଶକୁନପକ୍ଷୀ
ଯାହାର ଡେଣା ତଳେ
ବଞ୍ଚିଯାଏ ଅନାଥ ଆଶ୍ରମକୁ ଯାଇପାରି ନ ଥିବା
ଅବୈଧ କନ୍ୟାଟିଏ ।

ସେହି ବାଲିକୁଦ ଉପରେ
ପିକାଟାଣି ଶୋଇଥାଏ
ଆଲ୍‌କୋହଲିକ୍ ଆସାମୀ ବାପ ତା'ର
ଥୁଣ୍ଟା ଥୁଣ୍ଟା ଦାଢ଼ିପରେ
ମାଛି ବସିଥାଏ ।

ତୁମେ ପୁରୁଣା କୋଟ୍‌ଟିରେ ତାକୁ
ଘୋଡ଼େଇ ଦେଇ
କୁହୁଡ଼ିରେ ହଜିଯାଅ
ପୁଣି କେବେ ଦେଖାଦିଅ ସ୍ୱାଧୀନତା ପରେ
ଅବା ବାକି ଥିବା ମହାଯୁଦ୍ଧ ପରେ
ଗଳାରେ ହୁଇସିଲ୍ ଝୁଲେଇ
ହାଫ୍ ପ୍ୟାଣ୍ଟ ଟି'ସାର୍ଟ ପିନ୍ଧି
ଡ୍ରାମା ଚାଲିଥିଲାବେଳେ
କୁକୁଡ଼ାକାଟି
ପୋଖରୀରୁ ମାଛଧରି
ରୋଷେଇ ଖୁଆଅ ।

Digitized by PPRACHIN/SOA

ପିଲାଙ୍କୁ ବେପରୁଆ ସ୍ୱାଧୀନତା ଶିଖାଅ
ମଉଜ୍ କର କିନ୍ତୁ କହୁଥାଅ -
ସ୍ୱାଧୀନତାର କଷ୍ଟ ପିଲାମାନେ
ଭୁଲି ନ ଯାଅ ଯେପରି ।

କେତେ ଦିନ ଏ ଜୀବନ
କେତେଦିନ ବଞ୍ଚିବା
ବଞ୍ଚିବା ଆଜାଦ୍ ହୋଇ
ମରିବା ଶେଷଦୃଶ୍ୟ ଜୀବନର ଅଂଶ ।

ତେଣୁ ଜୀବନ ବାହାରକୁ ପାଦଟିଏ
ପକେଇବା ଆଗରୁ
ଟିକେ ଆକାଶକୁ ଚାହିଁବା
ଆଉ ନ ଫେରିବାକୁ
ଜୀବନ ଓ ମରଣ ଚକ୍ରକୁ
ତେବେ ସିନା ମୁକ୍ତ ହେବା ସବୁଦିନ ପାଇଁ ।

❑❑❑

(କଣାମାମୁର ଦ୍ୱିତୀୟଭାଗ ଲେଖିଥିବା ବ୍ୟଙ୍ଗ ସାହିତ୍ୟିକ ଏମ୍.ଆର୍ କେୟାରଙ୍କ ଅଶିତିବର୍ଷରେ ନିବେଦିତ)

Digitized by PPRACHIN/SOA

# ଅନୁଭବର ସୁନାମି

- ଏକ -

ଭୂମିକମ୍ପ ଦୁକ୍‌ଦୁକ୍ ସ୍ପନ୍ଦନରେ
ଶାଶୂଘରେ କି ବାପଘରେ
ରହିପାରୁ ନ ଥିବା ଝିଅର ଛାତିରେ
ସତେଅବା ଥିଲା ସେ ଗୁପ୍ତନଦୀ
ମୁହୂର୍ତ୍ତକ ବ୍ୟାଘାତରେ ଖୋଲିଗଲା ଦ୍ୱାର
ସବୁ ସମ୍ପର୍କର ।
ଚନ୍ଦ୍ର ଅବା ଥିଲା ସେ ଲୁପ୍ତମୁଦି
ବଉଦର ମାଛପେଟରେ
ଯାହାକୁ ଦେଖିଲା ପରେ
କଟିଗଲା ବିସ୍ମୃତିର ଅଭିଶପ୍ତ ଗହନ ଅନ୍ଧାର
ଫେରିଆସିଲା ପ୍ରେମପତ୍ର ହଂସର ଡେଣାରେ
ଫେରିଆସିଲା ସ୍ମିତହସର ରହସ୍ୟ
ଗର୍ଭବତୀ ଯୁବତୀର
କୁହୁଡ଼ିରେ ଜଳି ନ ଥିବା ମୁଖପଦ୍ମରେ
ମୋନାଲିସାର ।

ଭାଗ୍ୟ ତ ସେହିଭଳି ଅସ୍ପଷ୍ଟ ବର୍ଣ୍ଣମାଳାର
ସବୁ ପରିଚୟ ଥାଇ ବଞ୍ଚିତ ହେବାକୁ ପଡ଼େ
ନିଆଁରେ ପୋଡ଼ି ନ ଥିବା ନିର୍ବାସିତା ସତୀମାନଙ୍କୁ
ଏବେ କାହିଁକି ପଚାରୁଛ
ମା'ର ଓଦାହାତକୁ ଛାତିରେ ଥୋଇ
ହେ ମୋର ଜନ୍ମଦାୟୀ ମାତାପିତା
ସତ କହ ଏ ଭୂମିକମ୍ପ କ'ଣ ବେଶି ଭୟଙ୍କର
ମୋ ଛାତିର ଦୁକ୍‌ଦୁକିଠାରୁ
ସେତେବେଳକୁ ଲକ୍ଷେ ଲୋକ ଭାସିଗଲେଣି ସୁନାମିରେ ।

Digitized by PPRACHIN/SOA

- ଦୁଇ -

ସେଠୁ କେବେ ନିଷ୍କୃତି ନ ଥିଲା ଆମର
ଆଜି ବି ନାହିଁ
ବର୍ତ୍ତିଯାଇଥିବା ଲୋକେ ଭାବନ୍ତି
ଯିଏ ଗଢୁଛି ସେ ତାକୁ ଧ୍ୱଂସ ବି କରୁଛି
ଏବଂ ତାଙ୍କଦ୍ୱାରା ଦଳିତ ପୀଡ଼ିତ ହେବା
ଆମ ଭବିତବ୍ୟ ।

ସେ ଶକ୍ତିମାନର ମାଲିକାନା ନ ମାନି
ଆମର ଅନ୍ୟ ଗତି ନାହିଁ
କିଏ ବା ମାନିନେଇଛି ସେ ଅନୁଶାସନ
ବରଂ ସମସ୍ତ ଦୁର୍ଘଟଣାରୁ ବର୍ତ୍ତିଗଲେ
ଆକସ୍ମିକ ଭାବେ
ଭାଗ୍ୟବାନ୍ ନିଜକୁ ମଣୁଛି
ସତେ ଅବା କାହାର କିଛି
ବଙ୍କା ହେବ ନାହିଁ ।

ମୁଁ ଏତେ ମାୟାମମତା
କି ସମବେଦନାର ହୃଦୟ ନେଇ
ବଞ୍ଚିପାରିବିନି
ଯେହେତୁ ମୁଁ ଲୟବଦ୍ଧ
ବିଲୟ ସହିତ
ମତେ ଆଶ୍ୱସ୍ତ କରିଛି ପ୍ରଳୟ ପରେ ପ୍ରଳୟ
ସେଥିପାଇଁ ତାଙ୍କ ସହିତ ସମ୍ପର୍କ ମୋ ରହିଛି ଅତୁଟ ।

ଶୁଣିଛି ସେ ଗଢ଼ିପାରନ୍ତି ମେଦିନୀ
ପାପୀଙ୍କ ମେଦମାଂସରେ
ସର୍ବସ୍ୱ ଲୁଟେଇ ଦେଇ ମୁଁ ଅପେକ୍ଷା କରିଛି
କାଳେ ଅସ୍ଥିମଜ୍ଜାରେ ମୋର
ଗଢ଼ା ହୋଇପାରେ ଆମ ସମ୍ପର୍କର ପୃଥିବୀ ।

❑❑❑

Digitized by PPRACHIN/SOA

# ପ୍ରବାସୀ ସମ୍ପର୍କ

- ଏକ -

କବିତା ବି ଗୋଟିଏ ଶିଶୁ
ପେଟ ନ ପୂରିଲେ କାନ୍ଦେ
କ୍ଷୀର ସର ଲବଣି, ଯାହା ଦିଅ ପଛେ
ପେଟରୁ ଅଧିକା ହେଲେ ଉଗାରି ପକାଏ ।

ଶିଶୁମାନେ ଜାଣନ୍ତି ନାହିଁ
କେବେ ସ୍କୁଲ୍‌ର ଜଳନ୍ତା ଛପର
ଖସିପଡ଼ିବ ଓ ସେମାନଙ୍କୁ ଭସ୍ମ କରିଦେବ
ସେମାନଙ୍କ ସ୍ୱରସବୁ ଶୂନ୍ୟକୁ ଫଟେଇଲାବେଳେ
କୁମ୍ଭକର୍ଣ୍ଣ ସହରର ନିଦ୍ରାଭଙ୍ଗ ହେବ ।

ସେମାନେ ଜାଣନ୍ତି ନାହିଁ
ଅଶ୍ୱତ୍ଥାମାର ନାରାଚ
ଚେଚେନିଆର ଆତଙ୍କବାଦ
କାହିଁକି ପ୍ରତିଶୋଧପରାୟଣ
ଚେଁ ଚା କାକଳିକୁ ବନ୍ଦକରି ଦେବାପାଇଁ ।

ତୁମ ମୋବାଇଲ୍‌ରେ କହିଲ ତ ନାହିଁ
ସେ ଶିଶୁଟି କ'ଣ ଗପୁଥିଲା
କିଭଳି ପ୍ରଳାପ ତା'ର ଝଡ଼ବତାସର ସ୍ୱରଭଳି
ସ୍ୱପ୍ନ ଭଙ୍ଗ କଲା ତମର ।

ସେ ତ ମତେ ଖୋଜି ଖୋଜି ଆସି
ଶୋଇପଡ଼ିଥିଲା ମୋ ନ ଥିବା ଶେଯରେ
ମତେ ନ ପାଇ କାନ୍ଦିଥିଲା ଏଇଥିପାଇଁ ଯେ
କାଲିସକାଳେ ତାକୁ କିଏ ଦେଖେଇବ
ସେ ନଈଟିର ସମୁଦ୍ରଆଡ଼କୁ
ବଙ୍କେଇଯିବାର ଦୃଶ୍ୟ ।

Digitized by PPRACHIN/SOA

ପୋଲାଙ୍ଗ ଫୁଲର ଶେଯରେ
ନାଲିକୁକୁଡ଼ାଟି ଉଡ଼ିଗଲାବେଳେ
ବିକ୍ରେତା ହାତରୁ ଖସି
ଗାଈଟିର ହମ୍ବାରଡ଼ିରେ
ବାଛୁରୀଟି ଖେପାମାରି
ତା' ଆଡ଼କୁ ଦଉଡ଼ି ଆସିବ ।

ସେ ମତେ ନ ପାଇ ଫେରିଆସିବ
ତା' ବଦମିଜାଜୀ ବାପାର ସ୍ୱପ୍ନଭଙ୍ଗ ହେଲା ପରେ
ମାଆଠାରୁ ମାଡ଼ ଖାଇ ବାରମ୍ବାର ଫୋନ୍ ଧରିବ
ଭୁଲିଯାଇଥିବା କଥାସବୁ ପିତାମାତାଙ୍କର
ମୋଠାରୁ ଶୁଣିବାକୁ ।

ପୂତନାର କ୍ଷୀର ସାଙ୍ଗେ
ପ୍ରାଣ ଶୋଷିବାର କଥା
କାଳୀୟଦଳନ କଥା
କାଣିଆଙ୍ଗୁଠିରେ ପର୍ବତ ଉଠେଇଲାବେଳେ
ସବୁରିକୁ ବାଡ଼ିଲଗେଇ ଗୋବର୍ଦ୍ଧନ ଟେକି ଧରିବାକୁ
ସତର୍କ କରିବା କଥା ।

କେଉଁଠି ଅଛି ମୁଁ ବୋଲି
ବାରମ୍ବାର ଅଜଣା ଠିକଣାରେ ସେ ଡାଏଲ୍ କରୁଥିବ
ମୁଁ ନାହିଁ ବୋଲି ଜାଣି
ଖାଲି ଧୁ ଧୁ ଖରାରେ
କାନ୍ଦି କାନ୍ଦି ଲୋଟିଯାଉଥିବ
କିଏ ଖୋଜି ଆଣିଦେବ
ହଜିଥିବା ଶର ତା'ର
ଯେଉଁଥିରେ ସେ ମର୍ଯ୍ୟାଦାପୁରୁଷ
ସୂର୍ଯ୍ୟବଂଶ
ଏକାଥରେ ଲୋପ କରିଦେବ ।

Digitized by PPRACHIN/SOA

ଏବର କବିତା କୁଆଡ଼େ ସମ୍ପର୍କର କବିତା
ଆମ ପାଖେ ନାହିଁ ସେ ନିଃସଙ୍ଗତା
ଯାହା ଅଛି ଇଉରୋପ କି ଆମେରିକାରେ
ଆମେ ସେ ସଭ୍ୟତାକୁ ହାତ ପତେଇ
ମାଗୁଛୁ ସବୁ ଉଦ୍‌ଭଟତା ସବୁ ଅଶ୍ଳୀଳତା
ଏପରିକି ସମ୍ପର୍କହୀନତା
ସେଠି ଅଛି ଯନ୍ତ୍ରର ଘର୍ଘର
ଏଠି ଆମ ଗାଁ ଖାଁ ଖାଁ
ଆମେ କ'ଣ ସେହିପରି ଜଡ଼ବାଦୀ କି
କାଟିଦେବୁ ଭାବ ସିନିହର ଡୋର
ବୈକୁଣ୍ଠ ପରାଏ ପରା
ଆମର ଏ ଘର ।

ବଧୂମାନଙ୍କ ପାପ ପ୍ରଖ୍ୟାଳନ ପାଇଁ
ବାଥ୍‌ରୁମ୍‌ରେ ତୀର୍ଥସ୍ନାନ
ନଚେତ୍ କିଚିନ୍‌ରେ କିରୋସିନ୍ ସ୍ନାନ
ଆମର ସମ୍ପର୍କ ଏପରି ଶୁଦ୍ଧ ଯେ
ପରିଣିତା ନାରୀମାନେ
ବିସର୍ଜନ ଦେଉଥା'ନ୍ତି ନିଜ ନିଜ
ପ୍ରୀତିର ପ୍ରତିମା ।

ଝିଅମାନେ ଫେରିପାରନ୍ତି ନାହିଁ
କଲେଜ୍‌ରୁ ଷ୍ଟେସନ୍‌ରୁ ବସ୍‌ଷ୍ଟାଣ୍ଡରୁ
ପ୍ରତିଦିନ ସେମାନଙ୍କ ବାସ୍ନାବାରି
ଟହଲମାରିବା ସେମାନଙ୍କ ଗଳିରେ
ତୀରବେଗେ ମୋ ବାଇକ୍ ଛୁଟେଇ ଚାଲିବା
କର୍ମମୁଖର ଜୀବନ ସେମାନଙ୍କର
କିଏ କହେ ଆଜିକାଲି ଯୁବକ ବେକାର ।

Digitized by PPRACHIN/SOA

- ଦୁଇ -

ଆକାଶର ପକ୍ଷୀଙ୍କୁ
ଧାଡ଼ି ଧାଡ଼ି ହ୍ରଦରେ ବୁଲୁଥିବା ଦେଖି
ଲୁଚି ଲୁଚି ଗୁଳି ମାରିବା
କମ୍ ସଉକ ଆମ ମାଂସଲୋଭୀ
ଶିକାରୀମାନଙ୍କ
ଜାଲକୁ ଧରି ଶିକାରୀର
ସେସବୁ ପକ୍ଷୀଦଳ
ଆକାଶରେ ଉଡ଼ିବା ଏକ ବିରଳ ଦୃଶ୍ୟ
ବରଂ ଏକା ଚକ୍କର କାଟିବା
ନିଜ ଗାଁ ଆକାଶରେ ।

ବିଦେଶୀ ବିଦେଶିନୀ ଭଳି ଦେଖାଦେଇ
ଇନ୍ଦ୍ରଧନୁ ଭଳି ଲୁଚି ଯିବା ଅଟେ
ସମ୍ପର୍କ ଆମର
ଚିହ୍ନାମାଟି ଅଚିହ୍ନା ଆକାଶରେ
ଦଳରୁ ବାହାରିଆସି
କେଉଁ ଦିଗବାରିଣୀର ପୁରୁଣା ଖୁଣ୍ଟରେ ବସି
ଶୀତ କୁଡୁବୁଡୁ ଡେଣା ହଲେଇ
ସମୁଦ୍ରକୁ ହତାଶରେ ଚାହିଁବା ତ
ଏଠି ଅତି ପରିଚିତ ଦୃଶ୍ୟ
ନିଜ ସାଙ୍ଗେ ନିଜର ସମ୍ପର୍କ ମଧ୍ୟ ସେହିଭଳି
ଆହାର ବିହାର ଏବଂ ପ୍ରଜନନ ଭଳି
ଗତାନୁଗତିକ ।

ଗହଳିରେ ନାମହୀନ ହୋଇ
ମରଣ କି ପୁନର୍ଜନ୍ମ ଦେଇ
ପୁନଃ ପୁନଃ ଯୋଡ଼ି ହୋଇଯିବା ପାଇଁ
ଲୀଳାଭିନୟରେ
କି ଯେ ବ୍ୟାକୁଳତା ଆମ
ଯାହାପାଇଁ ବଶମ୍ବଦ ସବୁ ବାସ୍ତବତା । ❑❑❑

Digitized by PPRACHIN/SOA

# ବୋଧଗୟା

- ଏକ -

କେତେ ନଦୀ ଗିରିପଥ
ଗଳି ଉପଗଳି ଡେଇଁ
ହେ ଅନାମ ଯାଯାବର ।
ସାଧୁସନ୍ଥ ତୀର୍ଥଯାତ୍ରୀ ଗହଳିରେ
ଏଭଳି କ୍ଷେତ୍ରକୁ ଆସ
ଯେଉଁଠି ଜଣେ ଲୋକ ସବୁଲୋକ
ସବୁଲୋକ ଜଣେ ଲୋକ ହୋଇ
ଚାଲିଥା'ନ୍ତି ଗୋଟିଏ ଲୟରେ ।

ସହସ୍ର ତୁମର ନାମ
ହେ ଅନାମ
ଜଣ ଓ ଗଣ ତୁମେ ଏକାକାର
ସମଷ୍ଟି ତ ସାକ୍ଷାତ୍ ଈଶ୍ୱର ।

ସମସ୍ତ ସୁଫଳ ଓ ବରଦାନ ଦେଉଥିବା
ଶକ୍ତିମାନେ ହିଁ ତ ଦେବତ୍ୱର ଅଧିକାରୀ
ସମସ୍ତ ଦୟା ଓ କରୁଣା ସେମାନଙ୍କର
ପାଇବା ପାଇଁ ତପସ୍ୟା ବି ଦାନବଶକ୍ତିର ।

ଉଭୟ ଦିବ୍ୟତାର ଅଧିକାରୀ
ସିଦ୍ଧି ଓ ଐଶ୍ୱର୍ଯ୍ୟର
ଏକା ହିଁ ବଞ୍ଚିତ ତମେ
ଏକା ହିଁ ବଞ୍ଚିତ ଆମେ ।

Digitized by PPRACHIN/SOA

ସେମାନଙ୍କ ବରଦାନ
ନିଦର୍ଶନ
ଦୁର୍ବଳତା ନା ପରାଜୟର
ନୁହନ୍ତି ଭାଜନ କେହି
ଖୋଲିବାକୁ ତୁମ ଗନ୍ତାଘର ।

ସକଳ ପ୍ରାଣୀ ଭିତରେ
ହଜିଥିବା ଲୁଚିଥିବା
ଯେକୌଣସି ମଣିଷ ଭିତରେ
ମ୍ରିୟମାଣ ତୁମ ପ୍ରାଣ
ଅସହାୟ ସ୍ଥିତି ତୁମ
ଅନେକ ଦୂରରେ ଥାଅ
ଦ୍ୱୀପଟିଏ ଭଳି
ତୁମ ନାମ ଗ୍ରାମ
ସଜଳ ଅଶ୍ରୁରେ ସଦା ଛଳଛଳ ।

ଲହରୀର ମୂର୍ଚ୍ଛନାରେ କରୁଣ ନିକ୍ୱଣ ତୁମ
ଶୁଭେ କ୍ଷୀଣ
ଶୁଣେ କି ନ ଶୁଣେ ତୁମ ସମ୍ବେଦନା
ଆଶ୍ୱାସନା
ବାଲିତଳେ ଅଭିଶପ୍ତା ଫଲ୍‌ଗୁ ନଈ
ଅନ୍ତଃସଲିଳା ହୋଇ
କାନ୍ଦେ ରହି ରହି ।

- ଦୁଇ -

ସବୁଠୁ ନିଉନ ହୋଇ
ଅନାମା ଅଜଣା ସେହି ବେଦୁଇନ୍ ମଣିଷର
ପ୍ରାଣଫଟା କୋହ ତମେ
ଛାତିକୁ ପଥର କରି ଶୁଣୁଥାଅ
ଆଉ କେବେ ପାଣି ହୋଇଯାଅ ।

Digitized by PPRACHIN/SOA

ସବୁଠୁ ବିଚ୍ଛିନ୍ନ ହୋଇ
ବେଳେବେଳେ ଧୈର୍ଯ୍ୟହରା ହୁଅ
ଭାସିଆସେ ଏକାକାର ହାହାକାର
ବାତ୍ୟା ଓ ବନ୍ୟାରେ
ଅବିରତ ଆରତ ସ୍ୱରରେ ।

ଆସ ତମେ ଯୋଡ଼ି ଦେବାଲାଗି
କେତେ ଭଙ୍ଗାହାଡ଼
ଭଙ୍ଗାମନ ଭଙ୍ଗାନୀଡ଼
ତୁମ ଆଉ ଆମରି ଭିତରେ
କେହି ତ ନ ଥାଏ
ଥାଏ ଯଦି
ଉବୁଟୁବୁ ହେବାଲାଗି
ଭାବର ସମୁଦ୍ରଟିଏ ।

ଥାଏ ଯଦି ସମୁଦ୍ରରୁ ଶୋଷିହୋଇ
ଊର୍ଦ୍ଧ୍ୱକୁ ଉଠୁଥିବା ଜଳର ମୁକ୍ତିପଥ
ଜ୍ୟୋତିସ୍ତମ୍ଭ
ପ୍ରତିଟି ପାହାଚ
ଲହରୀରେ କମ୍ପିତ ସ୍ପନ୍ଦିତ ।

ଆମେ ଘୂରୁ ତୁମ ଜୟଗାନ କରି
ଶିରା ଉପଶିରାର ରକ୍ତଧାରେ
ବାଷ୍ପୀୟ ଆକାରେ
ମିଶିଯାଉ ନୀଳବର୍ଣ୍ଣ ଜଳଦର ଶୁଭାଙ୍ଗରେ
ବର୍ଷିଯାଉ
ପରିବ୍ୟାପ୍ତ ମାଟିର ଛାତିରେ
ତୁମ କରୁଣାରେ

Digitized by PPRACHIN/SOA

ଏ ମାଟିର ସ୍ଥଳଭାଗ
କୋଟି କୋଟି ବର୍ଷ ପରେ
ଏ ଦେହ ଏ ପଞ୍ଚଭୂତ
ଗଢ଼ା ତୁମ ପ୍ରୀତିପ୍ରବୃତ୍ତିରେ
ମିଠା ଲାଗେ ଲବଣାକ୍ତ ଜଳ
ତା' ଉପରେ ଭାସୁଥାଏ
ତୁମ ଶୂନ୍ୟଗ୍ରାମ ଭୂତଗ୍ରାମ
ବଟପତ୍ର ସମ ।

ସେ ଗ୍ରାମରେ କିଏ ବଞ୍ଚେ
କିଏ ମରେ
ଥାଏ ଯଦି ଅଶରୀରୀ ମଣିଷର
ବାର୍ତ୍ତାଳାପ
ଫିସ୍ ଫିସ୍ କଥା ଯେତେ ପିପ୍ପଳ ବୃକ୍ଷର ।

ସ୍ଥାବର ଓ ଜଙ୍ଗମର
ନିବିଡ଼ ଭାବର ଯେତେ ଗୁପ୍ତ ବିନିମୟ
ଅଶ୍ରୁତ ସେ ନିଃସ୍ୱନର ସ୍ରୋତରେ ସ୍ରୋତରେ
ତମେ ଆସ ଭାସି ଭାସି
ହେ ମହାନ୍ ଅଥଚ ସାମାନ୍ୟ ।

ତମରି ଫେରାର ଆତ୍ମା
ଧରାଦିଏ କେତେକାଳ ଅପେକ୍ଷାରେ
କେତେ କାହା ଅନୁଯୋଗେ
ମହାମିଳନ ଏ ତୀର୍ଥେ ପ୍ରତ୍ୟେକ ଜାତିର ।

- ତିନି -

ଅସ୍ଥିର ଏ ଭୂମି
ଊର୍ମିର ବିଷାକ୍ତ ଚୋଟରେ
ସଂଘାତପୂର୍ଣ୍ଣ ଏ ବେଳାଭୂମି
ମହାସାଗରରେ କେତେ ଝଡ଼ ଓ ସୁନାମି

Digitized by PPRACHIN/SOA

ଭୂକମ୍ପନ
ଦ୍ୱାରକା ନିମଗ୍ନ
କିଏ ଦୋଷୀ କିଏ ବା ନିର୍ଦ୍ଦୋଷୀ
ବାଛିବା ଭୀଷଣ କଷ୍ଟ
ହେବାପାଇଁ ତୁମ ପ୍ରିୟପାତ୍ର
ହେ ପରମ
ଯୁଦ୍ଧରତ ଦେବତା ଦାନବ
ଅସ୍ଥିରତା ଅଭିବ୍ୟକ୍ତି ମହାସମୟର ।

ଯଜ୍ଞରୁ ଉତ୍ପତ୍ତି କେତେ ମାରଣାସ୍ତ୍ର
ଆଜି ବି ପ୍ରସ୍ତୁତ ସେ ଦାନବର ହୃଦସ୍ଥଳ
ଜାଳଯଜ୍ଞ
ତମେ ତ ଆସିବ ଆସିବ ଆଜି
ନତ ଗୟାଶିର ।

ତୁମ ପାଦପଦ୍ମ ବିନା
ହୃଦେ ଯା'ର ନାହିଁ ଅନ୍ୟ ଲୟ
ଉତ୍ସର୍ଗିତ ପ୍ରାଣ ଦାନବର
ଚୂର୍ଣ୍ଣୀଭୂତ କରୁ ସବୁ ସତ୍ତା ତା'ର
କୌମୁଦ୍ରୁକୀ ଗଦା ତୁମ
ତୁମ ପାଞ୍ଚଜନ୍ୟ ଆଜି ବାଜୁ ଘନ ଘନ
ସେ ମେଦମାଂସରେ ତା'ର ପ୍ରତି ଅବୟବେ
ଗଢ଼ାହେଉ ନୂତନ ମେଦିନୀ ଏଠି
ଏକତ୍ରର ତୀର୍ଥ ହେଉ ତା'ର ହୃଦସ୍ଥଳ ।

ମେଦର ସେ ବିସ୍ତାରିତ ଅହଙ୍କାର
କାମନା ଓ ବୀଭତ୍ସ ଅନ୍ଧାର
ସବୁକୁ ନିଃଶେଷ କର ହେ ସୌଗତ
ତଥାଗତ
ତୁମରି କୋମଳ ପାଦ ଥାପିଆସ ।

Digitized by PPRACHIN/SOA

ସେ ପାଦରେ କେତେ ବ୍ୟଥା
କେତେ କ୍ଳାନ୍ତି କେତେ ପୀଡ଼ା
ଦୁନିଆର ଦଇନୀକୁ ଦଳିଦେବା ପାଇଁ
କେତେ ମାନବିକ ଲୀଳା
ସବୁ ଆଜି ଥମିଯାଉ
ଯାଉ ଥମି ନ ହେବାର କୋହ ଯେତେ
ନିପାରିଲା ପଣ ।

ତୁମରି ପ୍ରଦୀପ ଜଳୁ ବୋଧିସତ୍ତ୍ୱ
ଛାୟାନ୍ଧକାରେ
ଝରିଯାଉ ସୁବର୍ଣ୍ଣର ପତ୍ର ଯେତେ ପିପ୍ପଳବୃକ୍ଷର
ଝଳିଉଠୁ ଗୁମ୍ଫା ଅଭ୍ୟନ୍ତର
ହିରଣ୍ମୟ ଦ୍ୟୁତିରେ ପ୍ରାଙ୍କାର ।

ଦିବ୍ୟକରୁଣାରେ ତୁମ କଟିଯାଉ ସବୁ ଦୁଃଖ
କାମନାର ବିନାଶରେ ନୁହେଁ କେବେ
ଚେତନାର ବିକାଶରେ
ପ୍ରଶମିତ ହେଉ ତା'ର ଛାତିର ଦହନ
ସ୍ଥିର ହେଉ ଶିଖା ପ୍ରଦୀପର
ଦୀପ ଲିଭି ଜଳିଉଠୁ ଦୀପ ।

ଜଳୁଛି ଅସୁର ଜଳୁ
ଦଶହରା ଦୀପାବଳି ଆସୁ
ଜୁଇ ପରେ ଜୁଇ ଜଳୁ
ଫଲ୍‌ଗୁତୀରେ କେହି ଜଣେ ଜଳୁଥାଉ
ନିତି ଜଳୁଥାଉ ।

ଏଇଠି ନିସ୍ତାର ହେଉ ଜଡ଼ତାର
ଅଜ୍ଞତାର

Digitized by PPRACHIN/SOA

ନେତ୍ରୋତ୍ସବ -୫୯

ପରାଭବ ଆଉ ଅତ୍ୟାଚାର
ଉତ୍ସର୍ଗିତ ହେଉ ଏଠି ଯେତେ ଶ୍ରଦ୍ଧା
ଯେତେ ଦୁଃଖ ନିଷ୍ପୀଡ଼ନ
ଏହିଠାରେ ବନ୍ଦ ହେଉ ତା'
କାୟା ବିସ୍ତାର ।

ନା ଦେବତା ନା ଦାନବ
କିଛି ହୁଏ ନାହିଁ ସ୍ଥିର
ଉତ୍ସର୍ଗିତ ଗୟାପ୍ରାଣ
ଉଦ୍ୟତ ବଜ୍ରବାହୁର ନିର୍ଘାତ ପ୍ରହାର
କରୁ ତାର ମସ୍ତିଷ୍କକୁ ସ୍ଥିର ।

❑❑❑

ଦଶହରା - ୨୦୦୫
ଦିଲ୍ଲୀ

॥ ଜାନୁଆରୀ ୨୦୦୬ 'ଜୀବନରଙ୍ଗ'ରେ ପ୍ରକାଶିତ ॥

Digitized by PPRACHIN/SOA

# ବିଧର୍ମୀ

ମୁଁ ତୁମକୁ ଦେଖୁ ଦେଖୁ
ପହଞ୍ଚିଯାଏ ତୁମ ପାଦତଳେ
କ୍ଷଣକ ପାଇଁ ହଜିଯାଏ
ଅନ୍ୟମାନଙ୍କଠାରୁ
କେବଳ ଯେ ତମକୁ ମୁଁ ଦେଖୁଥାଏ
ତା' ନୁହେଁ
ଅନ୍ୟମାନେ ଦେଖନ୍ତି ତମକୁ
ତମେ ବି ଦେଖୁଥାଅ ମତେ
ଏବଂ ଅନ୍ୟ ସମସ୍ତଙ୍କୁ ।

କିନ୍ତୁ ତମେ ମତେ ପଦାଘାତ କରିବା ଆଗରୁ
ଅନ୍ୟ ସମସ୍ତେ ମତେ ଠେଲିଦିଅନ୍ତି
ଗହଳିରେ ପଦଦଳିତ କରାଇବାକୁ
ସେମାନେ ଅନେକ କିସମର ଲୋକ
ମୁଁ କିନ୍ତୁ କେବଳ ଜଣେ
ଅଲୋଡ଼ା ପ୍ରେମିକ
ମୋର ଅପରାଧ ଏକ
ଚିର ଅବୁଝା ପ୍ରେମ ।

ହୋଇପାରେ ଅନ୍ୟ କାହା ମନସ୍କାମ ପୂର୍ଣ୍ଣ କରିବାକୁ
କହିଥାଏ ତମକୁ ମୁଁ
କହିପାରେନା ନିଜ ବିଷୟରେ କିଛି
ପାପ ଟିକେ କୋଉଠି ଲାଖିଥାଏ ମହୁମାଛି ଭଳି
ଫୁଲଡାଲାରେ
ଯେଉଁ ମାଳା ବଢ଼େଇଦିଏ ତମକୁ
ଓ ତା'ର ପଦ୍ମପାଖୁଡ଼ାରେ ଥାଏ

Digitized by PPRACHIN/SOA

ଢଳଢଳ ଲୁହଟୋପାଏ
ନିଜର ହୋଇ
ଆବେଗରେ ଝଡ଼ିପଡ଼େ ଭିନ୍ନ ହୋଇ
ବୁନ୍ଦାଟିଏ ତମ ପାଦତଳେ ।

ସେ ଲୁହ ହୋଇପାରେ ମୋର
ଶେଷ ମୋହ
ବଦଳାଇପାର ତମେ ତାକୁ
ତୁମ ଅଧରର ମଧୁମନ୍ତ୍ରରେ
ମୋର ଲୁହକୁ ମୋର କୋହକୁ
ସମବେଦନାକୁ
ଯାହା ମୋ ସର୍ବାଙ୍ଗରେ କ୍ଷଣକ ପାଇଁ
ଚମକି ଉଠେ
ତୁମ ପାଦତଳେ ।

ମୁଁ ଠିଆ ହୋଇ ହଜିଗଲାବେଳେ
ଠେଲିହୋଇ ଗହଳିରେ
ଗର୍ଭଗୃହରୁ
ନିଷ୍କ୍ରାନ୍ତ ହେବା ପୂର୍ବରୁ ।

କିଏ ପ୍ରେମିକ କିଏ ଈର୍ଷୁକ
କେତେ କାହାକୁ ଦେଖୁ ଦେଖୁ
ତମେ ନୀତି ଓ ଧରମଡୋରିରେ
ଟାଣିଧର ଏକାଥରେ ସମସ୍ତଙ୍କୁ
ମୁଁ ଅମଙ୍ଗ ହୁଏ
କାରଣ ପ୍ରେମର କୋମଳ ପାଦ
ଥାପି ଥାପି ମୁଁ ଉଠିବାକୁ ଚାହେଁ
ପାହାଚ ପରେ ପାହାଚ ।

❑❑❑

Digitized by PPRACHIN/SOA

# ସମ୍ପର୍କ ଥିବା ନ ଥିବାର

କାଚ ଥରେ ଭାଙ୍ଗିଗଲେ ଯୋଡ଼ିହୁଏ ନାହିଁ
ତମେ କିପରି ଯୋଡ଼ିହେବ ମୋ ସହିତ
ମୁଁ ତ ନାହିଁ ତୁମ ପାଖେ
ତମେ ବି ତ ସମ୍ପର୍କ ଯୋଡ଼ିବାକୁ
ଚାହଁ ନାହିଁ କେବେ ।

ତଥାପି ଆଇନା ଦେଖି ହସିଲାବେଳେ
ଭାବୁଛ ସେ ହସଟି ବର୍ତ୍ତମାନ ହସୁ ନାହିଁ କାହା ପାଇଁ
କେଉଁ ସଞ୍ଜର ଏକାକୀ ନକ୍ଷତ୍ରକୁ ଚାହିଁ
ଲୁହ ପୋଛିଲାବେଳେ
ଭାବୁଛ
ସେ ଲୁହ ସେ ତାରାପାଇଁ ନୁହେଁ
ଆଉ କେଉଁ ସଞ୍ଜ
ଆଉ କେଉଁ ତାରା ପାଇଁ ।

ଗୁଣୁଗୁଣୁ ଗୀତ ଗାଇଲାବେଳେ
ଭାବୁଛ
ସେପରି ଗୀତ ତମେ ଇଚ୍ଛାକରି
ଗାଇପାର ନାହିଁ ।

ଜାଣେ ରଖିସାରିଥିବ ତୁମେ
ଆଇନାରେ
ନିଜଭଳି ମୋର ଅନୁପସ୍ଥିତିରେ
ମୋର ପ୍ରତିରୂପ
ଦର୍ପଣ ଦେଖିବାକୁ ନ ଥା'ନ୍ତି କେହି
ଥାଅ ତମେ
ମୁଁ ନ ଥିଲେ ବି
ମତେ ଦେଖି ହସିଦେବା ପାଇଁ ।

Digitized by PPRACHIN/SOA

ଅନେକ ଜାଣନ୍ତି ନାହିଁ
ପ୍ରତିଥର ଚନ୍ଦ୍ରୋଦୟବେଳେ
ମୟୂରଚନ୍ଦ୍ରିକାଟି କିପରି ଉଡ଼ିଯାଏ
ଏକାଦଶ ସ୍କନ୍ଧରୁ ଦଶମର
ନିଭୃତ କୁଞ୍ଜକୁ ।

ସମୁଦ୍ରକୁ ଲମ୍ଫ ମାରି
ଲୁଚିଥିବା ପଳାତକ ବାରମ୍ବାର ଫେରିଆସେ
ଢେଉର ଚଟାଣକୁ ରକ୍ତାକ୍ତ ବେଳାଭୂମିକୁ
ଅନିତ୍ୟ ଶରୀରକୁ ପୁଣ୍ୟର ଆଲୁଅରେ ଧୋଇ
ସୂର୍ଯ୍ୟଭଳି ଅନ୍ଧାରରେ
ସୂର୍ଯ୍ୟାସ୍ତକୁ ନିତିଦିନ ବଦଳାଇ
ଉଦୟରାଗରେ ।

ସେ କ'ଣ ଏପରି ଦର୍ପଣଟିଏ
ଯାହା ଭାଙ୍ଗିଯିବ ନାହିଁ
କେଉଁ ଦୁର୍ନିବାର କୋହ
ଗଳାରୁଦ୍ଧ କଲେ ବି ତମର
ତମେ ଅପେକ୍ଷା କରିବ ଲହୁଲୁହାଣ
ସାରାରାତି ସାରାଟା ଜୀବନ ।

ଛିନ୍ନଭିନ୍ନ ହୋଇଯିବ ମଧୁଲଗ୍ନ
ମଖମଲି ତକିଆ ଓ ଶେଯ ତୁମ
ତମେ ପାରିବନି ଥରେ ଡାକି
ହେ ପ୍ରଭୁ ମତେ ରକ୍ଷାକର ।

ତମେ ମୁକୁଳାଇ ବସିଛ କେଶପାଶ
ଶିଥିଳ ବସନ ତଳେ ନାହିଁ ଅନ୍ତର୍ବାସ
ଆଜିବି ଦେହ ତୁମ ଚମ୍ପାଫୁଲ
ବାରଣ କରୁଥିବ ଆଘ୍ରାଣକୁ
ଅଥଚ ମହକ ବାଣ୍ଟୁଥିବ ।

Digitized by PPRACHIN/SOA

କାହାର ଜାନୁଭଙ୍ଗ ହେବ ନାହିଁ
ଅଦ୍ୟାପି ସେ ଲୁଚିଥିବ
ନିରାପଦ ଅଙ୍କପଲଙ୍କରେ ଐଶ୍ୱର୍ଯ୍ୟମୟୀର
ଅପହରଣ ଓ ବଳାତ୍କାରରେ
ଇତିହାସ ପୃଷ୍ଠାସବୁ ଉଲଗ୍ନ
ଥରୁଥିଲାବେଳେ ।

ମୋହ ଭାଙ୍ଗିନି କାଳରଡ଼ିରେ
ନନ୍ଦିଘୋଷ ଚକର
ତମର କି ମୋର
କି କାହାର ।

ମୁଁ ସମ୍ପର୍କରେ ନ ଥାଇ
ତମ ସହିତ ଯୋଡ଼ିହେବା ପୂର୍ବରୁ
କେମିତି ଦେଖାଇବି ସେ ଆଇନାରେ
ଯେତେ ମୋର ନଷ୍ଟଭୂମି
ତମେ କେଉଁ ବିଶ୍ୱାସରେ ରୋପଣ କରିବ
ଆଶ୍ୱାସନାର ସବୁଜ ଚାରା
ଯାହା ବଞ୍ଚିପାରିବ କେବଳ ଲୁହରେ
କମ୍ପିତ ଓଠରେ ମୋର
କେମିତି ବର୍ଷିବ ଟୋପା ଟୋପା ମୋହର ମହୁ
ମୋ ଚଲାପଥର ପଙ୍କକାଦୁଅକୁ ନେଇ
କେମିତି ଚନ୍ଦନ ଭଳି ଲିପିଦିଅ
ସେମାନଙ୍କ କପାଳରେ ।

ତମର କ'ଣ ମୋ ଭଳି
ହତାଶା ନାହିଁ
ପାପ ନାହିଁ
ସ୍ୱପ୍ନ ନାହିଁ ଯେ

Digitized by PPRACHIN/SOA

ତମେ ଲୋଡୁଛ ମତେ
ନିଆରା ମନେକରି
ଗହଳି ଭିତରେ ।

ମୋର ମୋହଭଙ୍ଗ କରାଅ
ବାରମ୍ବାର ଯେ
କେଉଁ ସମ୍ପର୍କର ଭାବ ନେଇ
ମୁଁ ସମର୍ଥ ହେବି ମିଶିବାକୁ
ଅପାର୍ଥିବ ତୁମରି ସଙ୍ଗରେ ।

କିଭଳି ସମ୍ପର୍କ ନେଇ
ଲୁହରେ ଧୋଇବି ତୁମ ପାଦ
ତୁମର ବା ପାଦ କାହିଁ
କିଭଳି ନିଃସ୍ୱନକୁ ତୋଳିଆଣିବି
ନିଭୃତ କୁଞ୍ଜରୁ
ତୁମର ବା କାନ କାହିଁ ।

କ'ଣ ନାହିଁ ତମର
ସବୁ ଅଛି ଯେ
ସେସବୁ ସରିଯାଇଥିବା ଦିନ
ବିରହ-ବୀଣାର ମୂର୍ଚ୍ଛନାରେ
ସଙ୍କୁଚିତ ହାତଗୋଡ଼
ପ୍ରସାରିତ ଚକ୍ଷୁ ଓ ଅଧର ।

କିମ୍ଭୂତ କିମାକାର
କେବଳ ଅପୂର୍ଣ୍ଣ ଏଇଥିପାଇଁ ଯେ
ଯିଏ ଯେମିତି ସଜେଇ ପାରିବେ ତମକୁ
ନାନାଦି ବେଶରେ
ଶୂନ୍ୟ ସ୍ଥାନ
ମନସ୍କାମ ପୂର୍ଣ୍ଣ ହେଲାଯାଏଁ ।

Digitized by PPRACHIN/SOA

ମୋ ପାଖେ କିଛି ନାହିଁ
ଅଛି ଯଦି ଶେଷ ନିଃଶ୍ୱାସ ଟିକେ
ଯେଉଁଥିରେ ତୁମ ନାମ ଲେଖି
ଚଢ଼ାଇବି ତୁମ୍ଭନର ଗୀତିମାଳା
ସବୁ ନାହିଁକୁ ପୂର୍ଣ୍ଣ କରିବାକୁ
ବଞ୍ଚିବାକୁ ଲୋଡ଼ାଥିବା ପ୍ରତି ଉପାଦାନେ ।

କଳ୍ପନାରେ ଆଙ୍କିଥିବି ଯେତେ ଛବି
ଯେତେ ଶୋଭା ଯେତେ ଇନ୍ଦ୍ରଧନୁ
ରଙ୍ଗାଇବି ଶୂନ୍ୟ ଦେହ ଆକାଶର
ପୁଷ୍ପ ଓ ଚନ୍ଦନ ନେଇ
ସଜାଇବି ମୂର୍ତ୍ତି ତୁମ
ପ୍ରକୃତିର ସମସ୍ତ ଆଟୋପ
ଏବଂ ଆଡମ୍ବରେ
ଚିତ୍ରକରି ଲୁବ୍‌ଧ ମନ ମୋର ।

ହେ ମୋର ଦିଗବିଦିଗ ବାଲୁଚର
ତୁମକୁ ବିଦୀର୍ଣ୍ଣ କରି
ତୁମକୁ ଉଲଗ୍ନ କରି
ମରିଥିବା ଆନନ୍ଦର ଫଲ୍‌ଗୁଧାରେ ଖୋଜି
ଏପରି ଦର୍ପଣ ଏକ ଥାପିଅଛି
ପାଷାଣର ଅନ୍ତର୍ବେଦି ପରେ
ଦେଖିବାକୁ ଅପହୃତ ସବୁ ସ୍ମୃତି
ତୁମଠାରେ ବିଲୀନ ହେବାର

❑❑❑

॥ ଏପ୍ରିଲ ୨୦୦୫ 'ଅପୂର୍ବା'ରେ ପ୍ରକାଶିତ ॥

Digitized by PPRACHIN/SOA

# କୁମାର ପୂର୍ଣ୍ଣିମା

ଜହ୍ନ ସେଦିନ ଥିଲା
ତୁମ ଆଉ ମୋ ପାଇଁ ଅତି ବ୍ୟକ୍ତିଗତ
ଆକାଶ ସମୁଦ୍ର ଧରି ନାଚୁଥିଲା ଜହ୍ନ
ନିଃଶ୍ୱାସରେ ଆମରି ରକ୍ତରେ ।

ଝର୍କାର ସେ ନୀଳ ଆକାଶରେ
ବହୁଥର ହୋଇଥିବ ଚନ୍ଦ୍ରୋଦୟ
ବହୁଥର ଜଳି ଜଳି ପାଉଁଶ ବି
ଆୟୋଡ଼ିନ୍ ଢଳା ଏହି ଆକାଶର
ପୁରୁଣାକ୍ଷତରେ
ଉଡୁଥିବା ଜହ୍ନ ଅବା ଶୁଖିଲା ତୁଳାର ।

ବହୁତଳେ ମେଘ ଅବା ପତ୍ର ଉହାଡ଼ରେ
ଚାଲିଥାଉ ଯେତେ ଖାଲି
ପିଲାଳିଆ ଲୁଚକାଳି ଖେଳ
କିଏ ବା ଖୋଜିବ ତାକୁ
ମିଛଟାରେ ବିତିଯାଏ
ଅବଶିଷ୍ଟ କାଳ ।

କିଛି ନାହିଁ ଆକାଶରେ
ଅଛି ଯଦି ସଫେଦ୍ ଶୂନ୍ୟତାର
ଉଷ୍ମ ଅଭ୍ୟନ୍ତର ।

ଏ ଚନ୍ଦ୍ରମା ନା ମୋର ନା ତମର
ନା ରୁଷିଆ ନା ଆମେରିକାର
ନା ସୂର୍ଯ୍ୟର ନା ପୃଥିବୀର
ନା ଦିନ ନା ରାତିର ।

ଜହ୍ନରାତି କଇଁଫୁଲ ଝରାଶେଫାଳିର
ଜହ୍ନରାତି ଏକରାତି ସହସ୍ର ରାତିର
ଜହ୍ନରାତି ଭାଳିବାର ଭୁଲେଇଦେବାର
ଜହ୍ନରାତି ମୋ ସ୍ମୃତିର ଉଜ୍ଜ୍ୱଳ ଅନ୍ଧାର ।       ❑❑❑

Digitized by PPRACHIN/SOA

# ମୋ ପ୍ରତିମୂର୍ତ୍ତି ସାମ୍ନାରେ ତମେ

ନିଷ୍ପ୍ରାଣ ଥିଲା ଏ ମାଟି
ତମେ ତାକୁ ଦେଲ ଏକ ଆକାଶର ମନ
ମୋ ମନ ପାଲଟିଗଲା ତୁମ ରୂପ
ମୋହର ଉଦ୍ୟାନ ।

ମୁଁ ସେଠି ଚିର ଉଦାସ ପ୍ରତିମୂର୍ତ୍ତିଟିଏ
ଯିଏ ସେ ଉଦ୍ୟାନଟିକୁ ଦେଖୁଥାଏ
ମିଳନ ଓ ବିରହର ଦିନରାତି
ନିତି ନିତି କଟୁଛି କେମିତି ।

ତୁମକୁ ଇଙ୍ଗିତ କରେ ଦେବାଲାଗି ଧ୍ୟାନ୍ ତୁମ
ସବୁ ସ୍ୱପ୍ନ
ବିପନ୍ନ ମଣିଷ ପ୍ରତି
ପୀଡ଼ିତ ଜଗତ ପ୍ରତି ।

ପାପପୁଣ୍ୟ ଉପରକୁ ଉଠିଯାଇ
ଏ ହାତ ଆଡ଼େଇଗଲା
ଜୋଛନାର ବନ୍ୟା ଯେତେ ଶ୍ରାବଣର ମେଘ
ଫାଲ୍‌ଗୁନର ନୀଳତୃଷ୍ଣା
ଜନ୍ମମୃତ୍ୟୁ ଯନ୍ତ୍ରଣା ଅମାପ ।

ଭଲ ଥିଲା ରକ୍ତମାଂସ ଇତସ୍ତତଃ ପଡ଼ିଥିଲା
କିଏ ତାକୁ କାରିଗର କରିଲା ଏକାଠି
ଅକାମୀ ଅଂଶକୁ ନେଇ
ଗଢ଼ିଦେଲା ଦେହ ମୋର
ଆତତାୟୀମାନେ ଅବା ନାହାନ୍ତି କେଉଁଠି ।

Digitized by PPRACHIN/SOA

ମୁଁ ସେହି ସ୍ୱର୍ଣହୀନ ମାର୍ବଲ୍‌ର ମୂର୍ତ୍ତି
ଯେ ଦେଖୁଛି ତୁମ ହସ ତୁମ ଖୁସି
ଶୁଦ୍ଧ ତୁମ ପ୍ରଣିପାତ ନିତି
ଦୃଶ୍ୟ ଯା'ର ସାଧାରଣ ଅତି ।

ତମେ ବୋଧେ ଫୁଲଟିଏ ଦେବାପାଇଁ
ପଥର କରିଛ ମତେ
ପରିତୃପ୍ତ ହସ ନେଇ ଫେରିବାକୁ ପ୍ରତିଦିନ
ଗଢ଼ିବାକୁ ନିଶ୍ଚିନ୍ତରେ ତୁମର ସଂସାର ।

❑❑❑

Digitized by PPRACHIN/SOA

# ବୟସ୍କ ଚଷମାରେ ମଧୁମାସ

ଏହି ବର୍ଷା ଏହି ସୁଅ କେଉଁଆଡ଼େ ଯାଇଥା'ନ୍ତେ
ଯଦି ଏଠି ନ ଥା'ନ୍ତି ମୁଁ ଠିଆହୋଇ
ଚାହିଁ ତା' ବାଟକୁ ।

ଯେଉଁଠି ରାସ୍ତାର ଶେଷ
ସେଇଠୁ ତ ଆରମ୍ଭ ସମୁଦ୍ର
ମୋ ଭିତରୁ ଶୋଷିନେଇ ନଈଟିକୁ
ଆଉଥରେ ଢାଳିଦିଏ ବରଷାରେ
ନୂଆକରି ତାକୁ ।

ସମୟର ଶୋଣିତର ସେ ମଧୁମାସକୁ
ବାରମ୍ବାର ଫେରେଇଦେବାକୁ ମୋର ଦପ୍‌ଦପ୍ ଧମନୀକୁ
ଅସ୍ଥିର ଢେଉକୁ ।

ସେ କ'ଣ ଜାଣି ନ ଥିଲା
କେତେ ବ୍ୟଥାରେ ମଉନ ରହିବାକୁ ହେବ
ମୁଁ ତ ସବୁକାଳେ ଭସାମେଘ
ସେ ବି ତ ଯାତାୟାତ କରୁଥିବା
ନଉକା ଜହ୍ନର ।

ଘୂରି ଘୂରି ହସି ହସି ଯାଉଥାଏ
କେବେ ଧଳା କେବେ କଳା
ଛିଟ ଅବା ରଙ୍ଗିନ୍ ଶାଢ଼ିରେ
ସାମୁଦ୍ରିକ ପକ୍ଷୀପରି ବେଳାଭୂମି ପରେ ।

କେବେ କେବେ ଆତ୍ମୀୟଙ୍କ ମୃତ୍ୟୁ ସମ୍ବାଦରେ
ଫୋନ୍ ତାର ଆସିଥାଏ

Digitized by PPRACHIN/SOA

ଦୁଃଖ ସେ ଜଣାଇଥାଏ ଖୁବ୍ ସଂକ୍ଷେପରେ
ଆଉ କେବେ ଦେଖାହେଲେ କାନ୍ଦି ସେ ପକାଏ ।

ସତେ ଅବା ଗୋଟିଏ ଆତ୍ମୀୟ ଆମ
ଏଇ ଥିଲେ ଏଇ ଚାଲିଗଲେ
ଲୋକସବୁ ଆଁ କରି ଚାହୁଁଥା'ନ୍ତି
କ'ଣ ହେଲା ବୁଢ଼ାବୁଢ଼ୀ ଦୁହିଁଙ୍କର
ହାଟ ମଝିଟାରେ ।

ମୁଁ ଜାଣେ ବିୟୋଗ କା'ର ଏତେ କଷ୍ଟ ନୁହେଁ
ବିନ୍ଦୁ ବିନ୍ଦୁ ହୋଇ ଲୁହ ଜମାହୁଏ
ବର୍ଷିବାକୁ ଏକାଥରେ ଦୁହିଁଙ୍କର
ମରୁ ଇଲାକାରେ ।

ବିୟୋଗ ବାହାନା ତା'ର ଲୁହ ବି ଛଳନା
ବଞ୍ଚିବାର ଏକମାତ୍ର ସତ୍ୟ ଆମ ଏ ସାକ୍ଷାତ
ସେ ମୁହୂର୍ତ୍ତ ସର୍ବଦା ଯେ ଉତ୍‌କଣ୍ଠିତ
ଆବେଗ କମ୍ପିତ ।

କିଏ ଆଶ୍ରୟ ଦେବ କାହାକୁ
ସେମାନେ ଘେରିସାରିଥିବେ
ଶରଣବତ୍ସଳ କେଉଁ ସହରତଳିର
ଶରଣାପନ୍ନ ଜଳାଶୟକୁ ।

ଧନ୍ୟ କହିବା ଏ ସକାଳକୁ
ବୃନ୍ତଚ୍ୟୁତ ଫୁଲସବୁ ଆସିଥିବେ ଝୁଲିବାକୁ
ଧାଡ଼ି ଧାଡ଼ି ଫୁଲଦୋକାନକୁ
ଆଜି ପଦ୍ମକଳିକୁ ହାତରେ ଥାପୁଡ଼େଇ
ଫୁଟଉଥିବା କାରିଗରକୁ ଧନ୍ୟ କହିବା ତ

Digitized by PPRACHIN/SOA

କାଲି ମାଂସର ପଞ୍ଜରା ଝୁଲେଇ
ଡାକୁଥିବା କଂସେଇ ।

ଯାହାର କିରଣକୁ କୁହୁଡ଼ିକୋଳକୁ
ହସି ହସି ଡାକୁଥିବେ ରାତିସାରା ଜଳୁଥିବା
ଆଲୁଅ ସବୁ ଆବିଳ ଜଳାଶୟରେ
ସକାଳୁ ପାଲଟି ଯାଇଥିବେ ସେମାନେ
ଗୋରୀ ଗୋରୀ ଗୋବରା କଇଁ ।

ସକାଳୁ ସକାଳୁ ମାଛହାଟକୁ ଆସନ୍ତି
ପନିକି ପାଦତଳେ ଥୋଇ ଦୁଇଟି ପୃଥୁଳକାୟା
ଛିଟ ଶାଢ଼ି ପିନ୍ଧି ଜଣେ ବାରାହୀ
ଜଣେ ବଗଳାମୁଖୀ ।

ଟ୍ରଲିରେ ବସି ଦୁଇଟି ଦେବୀ
ଜଣେ କାଳୀ ତ ଜଣେ ଗୋରୀ
ପାନପିକ ପକେଇ କହନ୍ତି
ଖଣ୍ଡେ ଇଲିଶି ମାଛରେ ତ ପୋଲିସ୍ ଚାକିରି
କୋଉ ଶଳା ଅଫିସର ସତିଆବେ
କହିବ ମନଇଛା ଆମେ ଦର ବଢ଼ଉଛୁ ବୋଲି
ଦେବୀ ପୂଜାରେ ଆମେ ନ ହେଲେ ଅନ୍ୟ ନାରୀ ।

ଶରଣାର୍ଥୀ ନୁହେଁ କେ କାହାର
କାହିଁରେ ଅଟକେ ନାହିଁ ଯାଯାବର
ଯାହାସବୁ ପରିତ୍ୟକ୍ତ ଆବଶ୍ୟକ ତା'ର
ଚମଡ଼ା ଲୁହା ପ୍ଲାଷ୍ଟିକ୍ ଜରି
ନର୍ଦ୍ଦମା କେନାଲକୂଳ ଘୁଷୁରି ।

ଧୋବା ଧଳାଧୋତିରେ ଗଣ୍ଠିଲି ବାନ୍ଧି
ଅପରାହ୍ଣରେ ଲୁଗା କାଚି ଫେରିଆସିଲା ପରି

Digitized by PPRACHIN/SOA

ସୂର୍ଯ୍ୟ ଜଳାଶୟକୁ ଗଣ୍ଡିଲି ଭଳି କାନ୍ଧରେ ପକେଇ
କେବେ ଚଢୁଥିବ ଧଉଳି ଉପରେ ତ କେବେ ଯେକୌଣସି
ପାଣିଟାଙ୍କି ଉପରେ ।

ଧନ୍ୟ କହିବା ତା' ହାତର କୌଶଳକୁ
ଏପରିକି ଅଙ୍ଗୁଳି ନ ଥିବା ପନ୍ଝାରେ
ଆମ ସନ୍ତାପର ମଲ୍ଲୀଯୂଇ ମାଳତୀମାଳକୁ
ଖୁସିରେ ଶୁଙ୍ଘି ଫେରେଇଦିଏ ସେ ରସିକବର ।

ମେଘକୁ ଫେରେଇଦିଏ ରସାଳ ଯୌବନ
ସୂର୍ଯ୍ୟକୁ ସପ୍ତରଙ୍ଗ
ପବନକୁ ଅଦୃଶ୍ୟ ଚନ୍ଦନ
ପଙ୍କୁକୁ ଜୀବନ ତା'ର ମାଟିକୁ ତା' ଚେର
ପାଦୋଦକ ସବୁ କାଦୁଅ ସବୁ
ଏବେ ଧୂଳି ବୋଲି ହୋଇ ନାଚୁଛନ୍ତି ।

କିଏ ଆଶ୍ରୟ ଦେବ କାହାକୁ
ଧୂଳି ସବୁ ଜମାହୋଇ ଶୋଇଛନ୍ତି
ବଡିଖୁଣ୍ଟ ତଳେ
ଓଲେଇ ଗାଈ ବୁଲାକୁତୀଙ୍କର
ପେଟତଳେ ଟିଙ୍କସବୁ ତାରା ଭଳି ଲାଖିଥାନ୍ତି
ରକ୍ତ ଶୋଷୁଥା'ନ୍ତି
ରୁଗ୍ଣ ଆକାଶର ତଳିପେଟରେ ।

ବର୍ତ୍ତମାନଙ୍କୁ କେମିତି ଭେଟିବାକୁ ହେବ
ଜାଣିଥିଲେ ସମସ୍ତେ
ବିମାନଚାଳକ ଆଉ ସହଯାତ୍ରୀମାନେ
ମୁଁ ଥିଲି ଧ୍ୱଂସ ପାଇବାକୁ ସବାଶେଷେ
ଚତୁର୍ଥ ବିମାନେ ।

Digitized by PPRACHIN/SOA

ଚତୁର୍ଥ ବିମାନ
ଯାକୁ ଭୁଲିଯିବା ସହଜ
ଯିଏ ଖସି ନ ଥିଲା
ବୋଇଙ୍ଗ୍ ୭୫୭ କି ୭୮୭ ଭଳି
ବିଶ୍ୱବାଣିଜ୍ୟ କେନ୍ଦ୍ର କି ଆମେରିକାର
ସାମାଜିକ ଦପ୍ତର ଉପରେ ।

ଖସିପଡ଼ିଥିଲି ମୁଁ ଜନହୀନ ଉପତ୍ୟକାରେ
ହୃତ୍‌କମ୍ପଟାଏ ଧରି
ଚୂରମାର ହୋଇଥିବା ବ୍ଲାକ୍‌ବକ୍ସଟିଏ
ପେନ୍‌ସିଲ୍‌ଭେନିଆର
ଥାକ ଥାକ ପର୍ବତ ସନ୍ଧିରେ ।

ମୁଁ ଦେଖିଛି ସେ ବିମାନଚାଳକ
ଆତ୍ମଘାତୀ ଆତଙ୍କବାଦୀଙ୍କଠାରୁ
ଥିଲା ଏକ ଭିନ୍ନ ଦଶଭକ୍ତ
ଚକ୍ଷୁଷ୍ମାନ୍ ଉତ୍ତିଷ୍ଠିତ ଓ ସଦାଜାଗ୍ରତ ।

ସେ ଧ୍ୱଂସ କରିବାକୁ ଦେଇ ନାହିଁ
ଧବଳ ଉଆସକୁ ତା' ରାଷ୍ଟ୍ରର
ଯିଏ ବର୍ତ୍ତମାନକୁ ନେଇ ପହଞ୍ଚିଗଲା
ଧ୍ୱଂସ ପାଇବା ନିଶ୍ଚିତ ନିଷ୍ପତ୍ତିରେ ।

ଯେଉଁଠି ସାମାନ୍ୟ ଛୁରୀରେ ମରଣ
ଓ ତା' ଭୟରେ ଯେଉଁମାନେ
ବିମାନ ଚଳେଇବାକୁ ଛାଡ଼ିଦେଲେ
ସେ ଅନ୍ଧ ଆତତାୟୀଙ୍କୁ ।

ଲକ୍ଷ୍ୟଭେଦ କରିବାକୁ ଦୁରଭିସନ୍ଧିର
ଧର୍ମ ନାମେ ଜାତି ନାମେ କ୍ରୋଧ ଓ ପ୍ରତିଶୋଧର

Digitized by PPRACHIN/SOA

ଶିକାର ହେବାକୁ
ଛାଡ଼ିଦେଲେ ଶହଶହ ମଣିଷଙ୍କୁ
ଜାଳିପୋଡ଼ି ପାଉଁଶ ହେବାକୁ ।

କିନ୍ତୁ ଏ ସହମୃତ୍ୟୁକୁ ସହସ୍ର ଗୁଣ
କରିବା ଓ ନ କରିବା ନିର୍ଭର କରୁଥିଲା
ମୁହୂର୍ତ୍ତର ନିଷ୍ପତ୍ତି ଉପରେ
ପ୍ରାଞ୍ଜ ପାଇଲଟ୍ ସେହି ଦେଶଭକ୍ତଟିର ।

ମୁଁ ଥିଲି ତା'ର ସାକ୍ଷୀ
ନିଶ୍ଚିତ ମୃତ୍ୟୁକୁ ଆମନ୍ତ୍ରଣ କରିବା ବ୍ୟତୀତ
ନ ଥିଲା ବିକଳ୍ପ ଚିନ୍ତା
ପହଞ୍ଚାଇବା ବିମାନକୁ ନିରାପଦେ ବିମାନ ବନ୍ଦରେ ।

ଅବା ତଉଲିବା ଆଶା ନେଇ ହୃଦୟଗୁଡ଼ିକ
କାପୁରୁଷ ରକ୍ତଲୋଭୀଙ୍କର
ସେକାଳେ ନ ଥିଲା ଦ୍ୱିଧା ମୋହ କି କ୍ଷମତା
ସ୍ମୃତି ଅବା ପ୍ରୀତି କେଉଁ ଆତ୍ମୀୟମାନଙ୍କ ।

ନ ଥିଲା ନ ଥିଲା କିଛି
ଅବଶିଷ୍ଟ ଜୀବନକୁ ସୁରକ୍ଷିତ କରିବାର
ସର୍ବନିମ୍ନ ଇଚ୍ଛା ଅବା ବିଳାସର ଭବିଷ୍ୟତ୍ ସ୍ୱପ୍ନ
ନ ଥିଲା ତା' ସମ୍ମୁଖରେ ପର୍ଦ୍ଦା କୁହୁଡ଼ିର
ବରଂ ତା'ର ରାସ୍ତା ଥିଲା ଖରାଭଳି ରୋକ୍‌ଠୋକ୍
ମୃତ୍ୟୁଠାରୁ ଉଜ୍ଜ୍ୱଳ ପ୍ରଖର ।

❑❑❑

Digitized by PPRACHIN/SOA

# ଚତୁର୍ଥ ବାନର

ସାବଧାନ ଏ ତିନୋଟି ବାନର ଭିତରୁ
ଯେ କେହି ନିର୍ବୋଧ ଉଦ୍ୟତ ହୋଇପାରେ
ଗିଳିଦେବାକୁ ନବୋଦିତ ସୂର୍ଯ୍ୟ ।

କେତେ ବାସ୍ତୁବିଦ୍ୟା ପଢ଼ି ନିର୍ମିଛ ଏ ଅଟ୍ଟାଳିକା ତମେ
କିନ୍ତୁ ଉଠିପାରୁନା ଖୋଲାଛାତକୁ ସ୍ୱଚ୍ଛନ୍ଦରେ ସହଜରେ
ଏବେ ଦିନରାତି ସେଠି ଛକି ବସିଛନ୍ତି ସେହି ତିନୋଟି ବାନର
ଉସୁକେଇ ଚାଲିଛନ୍ତି ଅନ୍ୟମାନଙ୍କୁ ଯେଉଁମାନଙ୍କ ଦଳ
କ୍ଷୁଧାରେ ଉନ୍ମତ୍ତ ଏବେ କିଛିକାଳ ।

ସେମାନେ ଝୁଙ୍କେଇ ଚାଲିଛନ୍ତି ଲୁହାଗ୍ରୀଲ୍
ଦବ ତ ଦବ ଦିଅ ରୁଟି କି ଚାଉଳ ନ ହେଲେ ଗୁଳି କର
ଏବେ ସଂଖ୍ୟା ବଢ଼ିଲାଣି ଆମର
ଆଇନ୍ ହେଲାଣି ଆମ ନିରାପତ୍ତା ପାଇଁ
ଗଛ ଲଗାଅ କି ବଗିଚା ବଢ଼ାଅ ଫଳଫୁଲ ସବୁ ଆମର ।

ଆପଣ ତ ଦେଖିଛନ୍ତି ସେମାନଙ୍କୁ ସେ ପ୍ରଖ୍ୟାତ ତିନୋଟି ବାନର
ଜଣକ ହାତ ଆଖିରେ ଜଣକର ପାଟିରେ ଆଉ ଜଣକର କାନରେ
ଏବେ ହାତ କାଢ଼ି ନେଇଛନ୍ତି ସେମାନେ ଆଖିରୁ ପାଟିରୁ କାନରୁ
ସେମାନଙ୍କ ଆଖି ଦେଖିଛି ଆମର ଭ୍ରଷ୍ଟାଚାର ।

ସେମାନଙ୍କ ପାଟି ଅଭ୍ୟସ୍ତ ହୋଇଛି
ଶୋଧିବାକୁ ଆମକୁ ଅଶ୍ରାବ୍ୟ ଗାଳିରେ
ସେମାନଙ୍କ କାନ ଶୁଣିସାରିଛି ଆମ ଚରିତ୍ରଲିପିର ଗୋପନ କଥା
ସେମାନଙ୍କ ହାତ ଏବେ ବନ୍ଦ କରି ରଖିଛି
ଆମକୁ ଆମ ଗଢ଼ା କାରାଗାର ଭିତରେ ।

Digitized by PPRACHIN/SOA

ଆମେ କେବେ ମୁକ୍ତ ହେବା
ନାଚିବା ପବନରେ ଗଛବୃଛଭଳି
ନା ପଡ଼ିରହିବା ନିଜ ନିଜ ଗ୍ରୀଲ୍ ଭିତରେ
ହାତଯୋଡ଼ି ସତେ ଅବା ଚତୁର୍ଥ ବାନର ।



Digitized by PPRACHIN/SOA

# ପ୍ରେତଶିଳା

କେବେ ଦିନେ ଫଲ୍‌ଗୁ ସେପାଖେ
ଛୋଟ କାନ୍ଥକୁରାରେ
ଛାଡ଼ିଆସିଥିଲି ବହୁକାଳର ସୀତାଙ୍କୁ
ହଠାତ୍ ଦେଖିଲି
ପ୍ରସ୍ତ ପ୍ରସ୍ତ ବାଲି ଉପରେ
କାନ୍ଦି କାନ୍ଦି ତା'ର ସ୍ୱାମୀକୁ ଖୋଜୁଥିବା
ଏକ ନାରୀକୁ ।

ଏବେ ଦେଖିଲି
ସେ ନାରୀଟି ଛିଡ଼ା ହୋଇଛି ଉଲଗ୍ନ
ପ୍ରେତ ପର୍ବତ ଉପରେ ଗୟାର
ହାତରେ ତ୍ରିଶୂଳ ଧରି
ମହାକାଳୀ ଭୈରବୀ ରୂପରେ
କାନ୍ତାନୀ ଓ ଚାମୁଣ୍ଡାଙ୍କ ମେଳେ ।

ସେମାନେ କଳାଶାଢ଼ି ପିନ୍ଧି ମୁକ୍ତକେଶା
ହସୁଥା'ନ୍ତି ଟହଟହ ବିନା କାରଣରେ ।

ରାମଶିଳାରୁ ପ୍ରେତଶିଳା ବହୁଦୂର ନୁହେଁ
ଯେଉଁମାନେ ମୁକ୍ତି ପାଉଥିଲେ ରାମଶିଳାରେ
ଏବେ ସେମାନେ ମୁକ୍ତ ପ୍ରେତଶିଳା ପରେ ।

□□□

Digitized by PPRACHIN/SOA

# ନିଶିଗମନ

ଚେନା ଚେନା ଆକାଶର
ସୁନେଲି କି ରୁପେଲି ପର୍ଦ୍ଦାରେ
କେତେ କୋହଭରା ମଧ୍ୟାହ୍ନ
କେତେ ଆତୁର ନିଶାର୍ଦ୍ଧ
ପ୍ରତିଟି ଫାଙ୍କା ଡିହରେ
ସୁନାର ମୁରୁଜ ପକେଇ ବସିଥାଏ ସକାଳ
ମୋ ବୁଢ଼ୀମାଆ
ଯାହାକୁ ମୁଁ କେବେ ଦେଖି ନାହିଁ ।

କେବେ ସାହସ କରେନା ଯିବା ପାଇଁ ମୁଁ
ଶେଷବୁଦାଗୁଡ଼ିକର ବାଡ଼ ଡେଇଁ କିଆ କେତକୀର
ସବୁବେଳେ ବାଟ ଓଗାଳେ ଚତୁର୍ମାସ
ସଜଳ ସଞ୍ଜ ।

ଆଟୁମେରେଦାରୁ ଚାହିଁଥିବା ବିଲେଇ ଆଖିରେ
ଦୀପ ଜଳେଇ
ରାଧା ରାଧା ବୋଲି ପ୍ରତିଧ୍ୱନି ଶୁଭୁଥାଏ
କିଏ ଡାକେ ମୋ ଝେଜୀମା'କୁ ।

ସେ ଡାକେ
ଯିଏ ଧାଉଁଥାଏ ଧଳାଶାଢ଼ି ପିନ୍ଧି
କେବେ ପେଚା ଉପରେ ତ
କେବେ କଳାଶାଢ଼ି ପିନ୍ଧି
ଲହଲହ ଜିଭ କାଢ଼ି ଧାଉଁଥିବା କୁକୁରୀ ଉପରେ ।

ଯେମିତି କେଉଁ ମାତୃଶକ୍ତି

Digitized by PPRACHIN/SOA

କଙ୍କାଳ ପାଲଟିଗଲେଣି କେବେଠୁଁ
ଟିଣର ଦି'ପଟ ବଳା ପିନ୍ଧି
ବଡ଼ ଟୋପାଏ ସିନ୍ଦୂର ନାଇ ।

ବୁଲୁଛନ୍ତି ସବୁରି ବାଡ଼ିପଟେ
ଶାସନ ଗାଁଟିର ଗଡ଼ିଆପଛ ଆକାଶରେ
ମୋ ଡାକର ଉତ୍ତର ଦିଅନ୍ତି ସେ
ଯାହା ଶୁଭୁ ନ ଥାଏ କାହାକୁ ।

ସେ ତ ମୁଁ ଦେଖି ନ ଥିବା ଦେବଦେବୀ
ଏବଂ ପିତୃପୁରୁଷଙ୍କ ଆଦିମାତା
ଶୂନ୍ୟରେ ଗମନ କଲାବେଳେ
ଅର୍ଦ୍ଧନିଶିରେ
ସ୍ଥାନେ ସ୍ଥାନେ ରହିଯାନ୍ତି ଏ ଗାଁ
                    ସେ ଗାଁରେ
ପାଳିକରି ପ୍ରତିଟି ଦୁଆରେ ।

❑❑❑

॥ 'ବୀରଗୋବିନ୍ଦପୁର' ଶୀର୍ଷକରେ ୨୫.୧୨.୦୫ ରବିବାର ସମ୍ବାଦରେ ପ୍ରକାଶିତ ॥

Digitized by PPRACHIN/SOA

# ନେତ୍ରୋତ୍ସବ

- ଏକ -

ସ୍ୱପ୍ନରେ ନ ଥାଏ ଦୁଃଖ କି ସୁଖ
ଯଦି ଆମେ କାନ୍ଦୁ କି ହସୁ
ସେ ସବୁ ଆଗରୁ ଥାଏ ଆଗକୁ ବି
ଏପରିକି
ମୁରଲିଧରନ୍ ଆସିପାରେ ଖେଳ ଛାଡ଼ି ଏଲ୍.ଟି.ଟି.ଆଇ. ।

ଆତତାୟୀ ଭଳି
ପରଭେଜ୍ ମୁସାରଫ୍ ବି
ଆତଙ୍କବାଦୀ ସାଜି
ଲୁଚିଛପି ପଖାଳ ଖାଇପାରେ
ଶାନ୍ତିଲତାର ସନାଖଡ଼ିକା ହାତରୁ ।

ସ୍ୱପ୍ନରୁ ଭାବାବେଗ କାଢ଼ିଦେଲେ
ଗଢ଼ା ହୋଇ ସାରିଥାଏ
ଅବଶିଷ୍ଟ ପୃଥିବୀ
ଏପରିକି ଦେଶ ।

ଯେଉଁଠି ସ୍ୱପ୍ନ ଦେଖିବା
ସାଧାରଣ ଅଧିକାରଭୁକ୍ତ
ସେଠି ବଲିଉଡ୍‌ର ଗୋବିନ୍ଦାଙ୍କୁ ଆଣି
ଜଣେ ମିଳେଇ ଦେଇପାରେ ଓଲିଉଡ୍‌ର
ନୈନାଙ୍କ ସାଥୀରେ
ମୀରା କି ରାଧା ଭୂମିକାରେ ।

ଅବଶ୍ୟ ଆବେଗ ନ ଥିଲେ ସ୍ୱପ୍ନରେ
ମିଳନ ହୁଅନ୍ତା ନାହିଁ
ବିଶ୍ୱ କି ଦେଶର
କାହିଁରେ ଲାଗନ୍ତା ନାହିଁ ଭାବ ଓ ହୃଦୟ ।

Digitized by PPRACHIN/SOA

- ଦୁଇ -

ପୁରାଣ ଗଢ଼ାହୁଏ ସ୍ୱପ୍ନରେ
ସାପର ଶେଯରେ
ଅନେକ କଥା ଲେଖି ପ୍ରଭୁ
ସିଲଟରୁ ପୋଛିଦେଲା ପରେ
ଭାବୁଥା'ନ୍ତି ଆଉ କ'ଣ ଲେଖାଯାଇପାରେ
ବାରମ୍ବାର ଅବତାର ରୂପ ନ ନେଇ ।

ସବୁ ରଙ୍ଗ ସବୁ ଧ୍ୱନି ଦେଇ
ଅଙ୍କା ଯାଇପାରେ ଆଉ କେଉଁ ନଈ
ଯାହାର ସ୍ରୋତ ହୋଇ
ଧାଉଁଥିବେ ଅନେକ ଅଜଣା ଲୋକ
କୋଟିଏ ସ୍ୱପ୍ନରେ
ଗୋଟିଏ ତ୍ରିରଙ୍ଗା ତଳେ
ସୂର୍ଯ୍ୟର ବେଳାଭୂମିରେ
ଏକ ସମତଳେ ।

ଅଥବା ସେ ଚନ୍ଦନ ଚର୍ଚ୍ଚିତ
ମୁଣ୍ଡିତ ବାମନଙ୍କୁ ଦାନ୍ତଭିଡ଼ି
କୋଳେଇ ନେବା ପାଇଁ
ସତ୍ୟଯୁଗେ ବଳିରାଜା ଝିଅ (ରତ୍ନମାଳୀ)
ଦ୍ୱାପରରେ ପୂତନା
ତ୍ରେତୟାର ମୁନିଋଷିମାନେ
ଉଚ୍ଛନ୍ନ ଗୋପାଙ୍ଗନା ।

କଳିଯୁଗେ ସେମାନେ ଖଟନ୍ତି
ସେବାକାରୀ ହୋଇ ମଣ୍ଡିଦିଅନ୍ତି
ପୁଷ୍ପ ଆଉ ସୋଲର ଟାହିଆ
ପ୍ରଭୁଙ୍କ କାନ୍ଧ ଉପରେ ଚଢ଼ି ।

ଯେତେ ବାଗେଇଲେ ବି
ରହିଯାଉଥାଏ ଖଟକା କୋଉଠି

Digitized by PPRACHIN/SOA

ଅଭାବ ଥାଏ
ଯେତେ ଭରିଲେ ବି
ଶୂନ୍ୟ ଥାଏ ଭଣ୍ଡାର ।

ସେ ଏପରି ସୁଦର୍ଶନ ଯେ
ଅମୋଘ ହୋଇ ବି
ନୂଆ ନୂଆ ପାପ ଓ ଦୁଷ୍କର୍ମକୁ
ଚିହ୍ନିପାରନ୍ତି ନାହିଁ
କିବା ତାଙ୍କ ଲକ୍ଷ୍ୟ ପାଏ ନାହିଁ ।

ମୁହଁ ଲୁଚାନ୍ତି ମହୋଦଧିରେ
ସୀମା ସରହଦ ଡେଇଁ
ସୁନାମି ପରିକା
ଛିଟିକି ପଡ଼େ ଚିଲିକା ।

- ତିନି -

ପୁରାଣରେ ନା ଥାଏ ଭୂଗୋଳ
ନା ଇତିହାସ
ସବୁକାଳ ପାଇଁ ଥାଏ କେବଳ
ଏକ ଶୂନ୍ୟସ୍ଥାନ
ଅପୂର୍ଣ୍ଣ
ମନସ୍କାମ ପୂର୍ଣ୍ଣ ହେବାର ପବିତ୍ର ମୁହୂର୍ତ୍ତ ।

ସାମିଲ ସହସ୍ର ଆଖି
ତମେ ଆସ ତମେ ନାଚ
ଦ୍ରଷ୍ଟା ଏବଂ ସ୍ରଷ୍ଟା
ଉଭୟ ଏକ ପୁଣି ଉଭୟେ ତଲ୍ଲୀନ ।

ଭିତରେ ବାହାରେ
ସେମାନେ ସମସ୍ତେ ନୃତ୍ୟରତ
ଢେଉ ଭଳି ପଡୁଥାଏ
ଆଲଟ ଚାମର ।

Digitized by PPRACHIN/SOA

## - ଚାରି -

ଗର୍ଭଗୃହ ଅନ୍ଧାରରେ
ପ୍ରତିଟି ପ୍ରାରବ୍ଧ ବଦଳିଯାଏ
ଦିବ୍ୟ ଆଲୋକରେ
ଗ୍ରହ ତାରା ସନ୍ତୁଷ୍ଟ ହୋଇ
ପରିମାର୍ଜିତ କରନ୍ତି ଜାତକ
ସଂଶୋଧନ ବି
କ୍ଷଣକରେ ତୁମରି ଇକ୍ଷଣ ମାତ୍ରେ
ସବୁ ବଦଳିଯାଏ ।

ଜଣକୁ ଦେଖିଲେ ଲାଗେ ଚାରିଙ୍କୁ ଦେଖିଲା ପରି
ହେ ନୟନ ପିତୁଳା ସହସ୍ର ନେତ୍ରର
କି ଦେଖିଲା ଆଜ ନେତ୍ର ସତେ
ଉଚ୍ଛଳ ସ୍ୱପ୍ନରେ ଯାହା ରୂପାୟନ
ତାହାର ପ୍ରତିଫଳନ
ଲଗ୍ନ ଯୋଗ ଯାତ୍ରା ଓ ପାର୍ବଣ
ସତ ଲାଗେ ସବୁ ସତ ଲାଗେ
ଅସଲ ଲୀଳାଟି ତା'ର ଶୂନ୍ୟେ ବିଦ୍ୟମାନ ।

ଆଜି ସେହି ସ୍ୱପ୍ନ ସହ
ସାକ୍ଷାତ୍ ସତ୍ୟର
ସର୍ବତ୍ର ସମସ୍ତଙ୍କର
ଚାରିଚକ୍ଷୁର ଏ·ଚିରନ୍ତନ ମିଳନ
ସ୍ୱପ୍ନର ଆଖିରେ ସତ୍ୟ
ସତ୍ୟର ଆଖିରେ ସ୍ୱପ୍ନ
ଏ ଯେ ନେତ୍ରୋତ୍ସବ ।

❑❑❑

Digitized by PPRACHIN/SOA

# କବିତାର ଶରୀର

ମୋ'ର ଦେଖିବା ଓ କହିବା ମଝିରେ
ମୋର କହିବା ଓ ଚୁପ୍ ରହିବା ମଝିରେ
ମୋର ନୀରବତା ଓ ସ୍ୱପ୍ନର ମଝିରେ
ମୋର ସ୍ୱପ୍ନ ଦେଖିବା ଓ ତାକୁ ଭୁଲିଯିବା ଭିତରେ

କବିତା
ହଁ ଆଉ ନାହିଁର ମଝିରେ
ସେ ଖସିଯାଏ
କହିଦିଏ
ଯାହାସବୁ ଚୁପ୍ ଥାଏ ମୋ ଭିତରେ
ଚୁପ୍ କରେ
ଯାହା ମୁଁ କହୁଥାଏ
ସ୍ୱପ୍ନ ଦେଖେ
ଯାହା ମୁଁ ଭୁଲିଯାଏ
ସେ ନୁହେଁ କଥା ଖାଲି
ବରଂ ତାର କାର୍ଯ୍ୟ
କାର୍ଯ୍ୟ ସେ ନୁହେଁ ଖାଲି
ବରଂ ତା ଶବ୍ଦ
କବିତା କହେ ଆଉ ଶୁଣେ
ଏହାହିଁ ବାସ୍ତବ
ଯେତେବେଳେ କହେ ମୁଁ ବାସ୍ତବ
ଖୁବ୍ ଶୀଘ୍ର ହଜିଯାଏ
ଏହା କ'ଣ ଅଧିକ ବାସ୍ତବ
ବାସ୍ତବ ଏ ଭାବ
ଏବଂ ଅବାସ୍ତବ ଶବ୍ଦ
କବିତା

Digitized by PPRACHIN/SOA

ଆସେ ଏବଂ ଫେରିଯାଏ
ଥିବା ଆଉ ନ ଥିବା ଭିତରେ

ସେ ବୁଣିଦିଏ ଏବଂ ବୁଣେ ନାହିଁ
ପ୍ରତିବିମ୍ବ
କବିତା ବିଞ୍ଚିଦିଏ ଦୃଷ୍ଟିକୁ
ଗୋଟିଏ ପୃଷ୍ଠାରେ
ବୁଣିଦିଏ ଶବ୍ଦସବୁ ଆମରି ଆଖିରେ

ଆଖି କହେ
ଶବ୍ଦ ଦେଖେ
ଚାହାଣି ଭାବୁଥାଏ
ଭାବନାକୁ ଶୁଣୁଥାଏ
ଦେଖୁଥାଏ

ଆମେ ଯାହା କହୁ
ଛୁଇଁଦିଏ ଭାବର ଶରୀର
ଆଖି ବନ୍ଦ
ଶବ୍ଦ ପତା ମେଲେ ।

❑❑❑

॥ ଅକ୍ଟୋଭିଓ ପାଜ୍‌ଙ୍କ A tree within କବିତାର ସଙ୍କଳନର Between what I see and what I sayର ଏ ଅନୁସୃଜନ ॥

Digitized by PPRACHIN/SOA

# ଝର୍କା

ଝର୍କା ହିଁ ଗୋଟିଏ
ଆଖିରେ ନା ଅଙ୍ଗୁଳିରେ
ଅକ୍ଷରରେ ନା ଇଙ୍ଗିତରେ
ଏ ପାଖୁ ଦେଖୁଛି ବାସ୍ତବ
କଳ୍ପନାକୁ
ସେ ପାଖୁ କଳ୍ପନା ବାସ୍ତବକୁ
ଚାଲିଛି ଦେଖା ସାକ୍ଷାତ
କବିତାରେ ।

ସ୍ୱପ୍ନ ଶୁଣାଏ ଆଳାପ ଜୀବନକୁ
ଜୀବନ ଶୁଣାଏ ସଂଳାପ
ସ୍ୱପ୍ନସୁନ୍ଦରୀକୁ ।

ଝର୍କା ଚିଠି ନା କବିତା
ମେଘ କି ତାରା
ଫୁଲ ନା ଖରା
ଟେଲିଫୋନ୍ କି ଡାକବାଲା ।

ତୁମ ଆଉ ମୋ ଭିତରେ
କେଉଁଠି ଥିଲା ସେ ଝର୍କା
ଯାହାର କବାଟ କେବେ ବନ୍ଦ
ହୁଏ ନାହିଁ
ଝଡ଼ବତାସରେ ।

❑❑❑

।। ପ୍ରକାଶିତ 'ସିଂହଦ୍ୱାର' ପୂଜା ୨୦୦୪ ।।

Digitized by PPRACHIN/SOA

# ଶିକୁଳି

ସମ୍ପର୍କ କ'ଣ ସମ୍ଭବ
କେବଳ ଇ-ମେଲ୍‌ରେ ଇଣ୍ଟରନେଟ୍‌ରେ
ସବୁଠୁ ସମ୍ପର୍କ କାଟିଲେ
କ'ଣ ପହଞ୍ଚିବାକୁ ହୁଏ
ମହାଜାଗତିକ ସମ୍ପର୍କରେ ।

ସମ୍ପର୍କ ବଢୁ ବଢୁ ଏପରି ଦିଶେ ଯେ
ନିଜେ ନ ଥାଇ ଥା'ନ୍ତି ସମସ୍ତେ
ସେ ନ ଥାଇ ଥାଏ ଦେଶ ଜନତା ବିଶ୍ୱ
ପ୍ରକୃତି ଈଶ୍ୱର ପ୍ରାଚୁର୍ଯ୍ୟ ପ୍ରାସାଦ ।

ସେ ସବୁଠୁ ସମ୍ପର୍କ କାଟିବାକୁ ହେଲେ
ତା'ର ସ୍ମୃତିକୁ ସାଇତିବାକୁ ହେବ ଦିନରାତି
ତୁମ ଆଉ ତା' ଭିତରେ ନ ଥିବ ସଂସାର
ଏପରିକି ନା ତମେ ନା ସେ ।

ନଈଟିଏ ବୋହୁଥିବ ଦୁଇକୂଳ ଛୁଇଁ
ଦୁହେଁ ଥିବେ ଏକାକାର ନିଜକୁ ହଜେଇ
ଇହକାଳ ଲାଗୁଥିବ ପରକାଳ ପରି
ପରକାଳ ଦିଶୁଥିବ ଇହକାଳ ଭଳି ।

❑❑❑

।। ପୂଜାସଂଖ୍ୟା ୨୦୦୪ 'ଅପୂର୍ବା'ରେ ପ୍ରକାଶିତ ।।

Digitized by PPRACHIN/SOA

# ଜନପଥରେ ଛାୟାପଥର କବି

କେବେ କେବେ ଶୋଇପଡ଼େ ପାର୍କରେ
ନିଜ ଛାଇ ପରେ
ମତେ ଧକେଇ ଚାହିଁଥିବା ପୋଷାକୁକୁରର
ତାଟିଆରେ ଭାତ ଅଛି
ବେକରେ ଶିକୁଳି ଅଛି
ରୁମ ତଳେ ପାହାରର ଚିହ୍ନ ଅଛି
ସବୁରିକୁ ସଲାମ ଦେବାର ଅଛି ।

ଏଇ ତା'ର ବେଳ ନାଳ ଗଡ଼େଇବାର
ଘାଲେଇ ଶୋଇ ପଡ଼ିବାର
ସିମେଟ୍ ବେଞ୍ଚଗୁଡ଼ିକରେ କେହି ନାହିଁ
ଚୀନାବାଦାମଗୁଡ଼ିକର ଚିର୍ଚ୍ଚେରା ଶବ୍ଦ
କିଂବା ଚାକୁଣ୍ଡା ମଞ୍ଜି ସବୁ ହସୁଥା'ନ୍ତି
ଦାନ୍ତ କାଢ଼ି ପବନରେ ।

ମୁଣ୍ଡ ଝାଇଁ ଝାଇଁ କରେ
କାହାକୁ ଦେଖିଲେ ମୁନିଆ ଦାନ୍ତ ଦେଖେଇ
ଗୋଡ଼େଇ ଯିବାକୁ ଇଚ୍ଛା ହୁଏ
ନଚେତ୍ ଆଶଙ୍କା ଥାଏ
ନିଜ ଓଠ ରକ୍ତାକ୍ତ ହେବାର ।

କଣ୍ଟା ଖାଇ ଖାଇ ଜିଇଥିବା ଓଟର
ଫରକ ବା କ'ଣ
ଖର୍ଜୁର ଉଦ୍ୟାନ ଓ ମରୁଭୂମିଟିର
ଚିରକାଳ କ୍ରୀତଦାସ ମୁଁ
ନା ହୋଇଛି ନକ୍ସଲ ନା ସାଧୁସନ୍ଥ
ନା ଯାଇପାରିବି କୋଶଳ ଖଣ୍ଡରେ
ନା କଳିଙ୍ଗନଗରରେ ।

Digitized by PPRACHIN/SOA

ଏତିକି ଫରକ ଯେ
ତୁ ତୋ ଧାନକିଆରିରେ
ମୁଁ ମୋ କବିତା କିଆରିରେ
ତୁ ଚାଷ କରିଛୁ ଏକର ଏକର
ମୋର ଚାଷଭୂମି ଓ ଭୂମାର
ଏକା କଥା
ତତେ ମିଳେନା ତୋ ଫସଲ
କି ମତେ ମିଳେନା ମୋ ଫୁଲ ।

❑❑❑

।। ୨୦୦୫ 'ଆରୋହଣ'ରେ ପ୍ରକାଶିତ ।।

Digitized by PPRACHIN/SOA

# ଛାୟାପଥରେ ଜନପଥର କବି

ଆଉ ଦୂର ନୁହେଁ ଜନପଥରୁ
ଛାୟାପଥ ମୋର ।

ବିଳମ୍ବିତ ପ୍ରହରରେ ସମୁଦ୍ରର ପବନରେ
ଶୋଇ ଶୋଇ ଚାଲୁଥିଲାବେଳେ
ଏଯାଏଁ ସବୁ ନକ୍ଷତ୍ରଙ୍କୁ ନେଇ
ମୋର ପରିଚୟ
ଆଳାପ ସରିନି ।

ଆକାଶର ଶୂନ୍ୟ ଖୋସାରେ ଅନ୍ଧ ଆଖିଟି ଥରେ
ଖୋସିଦେଲା ପରେ
ମଲ୍ଲୀଫୁଲଟି ଭଳି
ସମସ୍ତ ନକ୍ଷତ୍ରଙ୍କୁ ଦ୍ୱୀପସମ ବିଞ୍ଚିଦେଇ
ଭାଳିବାକୁ ଦିଏ ଆକାଶର ନୀଳସମୁଦ୍ରରେ ।

ସକାଳ ହେଲେ
ମାଲୁଣୀ ମାଳବିକାଙ୍କୁ କହି ବି
ସାଉଁଟି ଆଣିବାପାଇଁ ଶିଶିରବିନ୍ଦୁକୁ
ଆଖିର ଶାମୁକାରୁ ଅଥବା ଘାସଫୁଲରୁ
ବାନ୍ଧିବାକୁ ମୁକ୍ତାମାଳ
ସୂର୍ଯ୍ୟର ସୋରା ସୋରା ଶିରାଳ ହାତରେ ।

❑❑❑

Digitized by PPRACHIN/SOA

# ଦ୍ରୋହୀ

ସେତିକି କ'ଣ ଯଥେଷ୍ଟ ନୁହେଁ
ମୁହୂର୍ତ୍ତଟିଏ
ନା ମୁଁ ଥିବି ନା ତମେ ଥିବ
ଦୁହିଁଙ୍କ ଭିତରେ ଦୁହେଁ
ହଜାଇଦେଲେ କାଳ କାଳ ଭୋକଶୋକ
ହାଡ଼ଭଙ୍ଗା ଋତୁ ଆଉ ଅନେକ ବସନ୍ତ ।

କେହି ନ ଥିଲେ ମୁଁ କି ତୁ କହିବାକୁ
ଯଦି ଥିଲା କୀଟଟିଏ ଗର୍ଭକୋଷରେ
ଫୁଲଟିର ସୁବର୍ଣ୍ଣ ପାତ୍ରରେ
ଶେଷ ହୋଇ ସାରିଥିଲା ଯାହାଥିଲା ।

କବି ହେବାର ଅପ୍ରାଧ ତ ହୋଇସାରିଛି
ଏଥର କ୍ଷମାକର
ଜହ୍ନ ଆଲୁଅରେ ବସିବାର ଅପ୍ରାଧ
ଓଦା ଝାଉଁବଣରେ
ପବନ ସାଥିରେ ଘୂରିବାର ଭୂତପଣ ।

ସବୁ କଥା ତ ଚିପୁଡ଼ି ଦେଇଛି
ଟୋପାଏ ସ୍ନେହରେ ନିସ୍ତରଙ୍ଗ ଜଳରେ
ରଙ୍ଗବେରଙ୍ଗ ଭଉଁରି ଖେଳାଇ
ନିଜକୁ ଲୁଚେଇ ବୁଲିଛି
ପାହାଡ଼ୀନଈର ଶୁଖାରାସ୍ତାରେ
ଉଲଗ୍ନ ପାଦରେ
ବାଲିଗରଡ଼ା ଉପରେ ।

Digitized by PPRACHIN/SOA

ଫେରିବି ନାହିଁ ବୋଲି
ଶେଷ କରିଦେଇଛି ନିଜକୁ
ନିଜର ସୀମାକୁ
ଶାଗୁଣାର ଛତା ତଳେ
ଥୁଣ୍ଟାଗଛ ମୂଳେ
ଅକ୍ଷରର ମୁଣ୍ଡମାଳା ପିନ୍ଧି
ଅତନ୍ଦ୍ର ଅଘରୀ ମୁଁ ।

ତମର ଶେଷ ଆହୁତିରେ
ଜାଳିପାରିନି ରାଶି ରାଶି ଶବ୍ଦକୁ
କାଗଜର କବିତାକୁ ପ୍ରତିଟି ସଞ୍ଜରେ
ରୁଟି ସେକା ହେବାପାଇଁ ସ୍ତ୍ରୀଲୋକଙ୍କର ।

❑❑❑

।। ୨୦୦୦ 'ବିଜୟା'ରେ ପ୍ରକାଶିତ ।।

Digitized by PPRACHIN/SOA

# ଏକବିଂଶ ଶତାବ୍ଦୀ

ସବୁଠୁ ଉଁଚା କୋଠାଟି ଉପରେ
ସିମେଟ୍‌ର ସ୍ତମ୍ଭ
ଶହ ଶହ ଲୁହାଛଡ଼ର ଆଙ୍ଗୁଠି
ମାଗୁଥାଏ ଆକାଶକୁ
ଦେ ଦେ ଇସ୍ପାତର ହାତ ।

ଛାତସବୁ ଧରାଦେଇ
ହାତରୁ ଖସିଯାଉଛନ୍ତି ସ୍ୱର୍ଗଭଳି
ଷ୍ଟେନ୍‌ଲେସ୍ ମେଘଭଳି
ଏ ପୃଥିବୀ କେବେ କରିବ
ତା'ର କାରବାର ସେ ସମୟ ସହିତ ।

ଏବେଠୁ ସମୟ ନିଦେଇ ଗଲାଣି
ପାଣି ଆସୁ ନ ଥିବା ଉଁଚା ଟିଉବେଲ୍ ଉପରେ
ପାଇଟି କରୁଥିବା ଗାଁର ଛୋଟ ଝିଅଟି ପରି ।

ମଧ୍ୟାହ୍ନସାରା ଧନ୍ଦି ହେଉଥିବା ପବନର
କେତେବେଳେ
କେଉଁଠି ଲାଗିବ ଚେର ।

ନିଦ ଭାଙ୍ଗିଲାବେଳକୁ ସ୍ୱପ୍ନରେ ହଜିଥିବା
କେଉଁ ଏକବିଂଶ ଅବତାର
ଟାଇଟନ୍ ଭଳି ବୁଡ଼ି ବୁଡ଼ି ଯାଉଥିବା
ଅବଶ ପୃଥିବୀର କରିବେ ଉଦ୍ଧାର ।

❑❑❑

Digitized by PPRACHIN/SOA

# ମେଘାଲୋକ

ଅଭ୍ୟାସବଶତଃ ଚାଲିଛି ତ ଚାଲିଛି
ଏ ସମ୍ପର୍କ ଏ ଯୋଗାଯୋଗ ।

ନୀଳନଦୀର ବେଣୀତଳେ
ଚୂନା ଚୂନା ଫଳସବୁ ଆକାଶର
କ୍ଷୁଧାତୃଷାର ସାହାରାରେ
ଖୋଜିବାର କ୍ଷେତ୍ର
ବହୁଦିନୁ ହଜିଯାଇଥିବା ଏକ ସୁନାର ବନହଂସୀ
କ୍ଳାନ୍ତି ଓ ଅବସାଦ ନେଇ
ଫେରିଆସିଛି ଫୁଜିୟାମା, ହିମାଳୟ ଡେଇଁ ।

ଫେରିଆସେ ବିଗଳିତ ଜଡ଼ତା
ବିଜଡ଼ିତ ଉଷ୍ଣତା
ସୁଖଦୁଃଖ ମଣିଷର ଚିରନ୍ତନ କଥା ।

ଟେବୁଲ୍ ଉପରେ ସୁସଜ୍ଜିତ ମହାଯୁଦ୍ଧର
ନକ୍ସା ଓ ମାନଚିତ୍ର ପକ୍ଷ ପ୍ରତିପକ୍ଷର
ତ୍ରିପୁରଦାହଠାରୁ ମୁଦ୍ରାରାକ୍ଷସ
କ୍ଷୟିଷ୍ଣୁ ସମୟର ନାଟକୀୟ ଦ୍ୱନ୍ଦ୍ୱ ।

ସ୍ଥିତପ୍ରଜ୍ଞ ସମୟର ଉଦ୍‌ବେଗ ତ
ଶିଖା ଭଳି ପ୍ରକମ୍ପିତ
ପ୍ରତିଟି ମୁହୂର୍ତ୍ତ ।

❑❑❑

Digitized by PPRACHIN/SOA

# ଶିଖା

କେଉଁ ଦୀପରୁ ଛିଟିକି ଆସିଥିବା
ଶିଖାଟିଏ
ଠିଆହୋଇଛି ସମୁଦ୍ରର ନୀଳପରଦାଟି ଧରି
ଦ୍ୱାରବନ୍ଧରେ ।

ଦଲକାଏ ପବନରେ ନ ଲିଭି
ତଡ଼ିହୋଇ ଆସିଛି ଢେଉର ପିଠିରେ
କେଉଁ ଦ୍ୱୀପରୁ
ସୁନା ଏକ ପ୍ରଜାପତି
ଖାଁ ଖାଁ ଖଣ୍ଡହରରେ ଘୂରୁଥାଏ କେବଳ
ଚୁପ୍‌ଚାପ୍ କାଳଭଙ୍ଗୁର ସ୍ୱର
ଢଗୁଆଳ ସେ ପବନର ।

ମହଲା ମହଲା ଭର୍ତ୍ତି ହାହାକାର
କିଏ ସେହି ପରିତ୍ୟକ୍ତା
ହଜି ଯାଇଥିଲା ଦିନେ ଯିଏ
ମୀରା ଭଳି ମଗ୍ନ ହୋଇ ନିଜର ଲୟରେ ।

ଗହଳିରେ ଗର୍ଜିଉଠୁଥିଲା ପ୍ରତିଟି କୋଠରି
ଫିସ୍ ଫିସ୍ କଥାର ମନ୍ତ୍ରଣା
ଲୁଚେଇ ଲୁଚେଇ ଗୋପନରେ
ଗରଳ ଝରୁଥିଲା ଠପ୍ ଠପ୍
ବୁକୁର୍‌ମାନଙ୍କର ।

Digitized by PPRACHIN/SOA

ସେ ଆଜି ଦୂର କିମ୍ବଦନ୍ତୀ
ଭାସିଆସେ ଅଶ୍ରୁତ ଗୀତ ତା'ର
ସ୍ୱପ୍ନ ହୁଏ ସ୍ମୃତି
ଭାଙ୍ଗିଯାଏ ଝାଡ଼ବତି ପାହିଯାଏ ରାତି
ଉଡ଼ିଯାଏ ବତିଶିଖା ଉଇଁବାକୁ ତାରାଭଳି
ଆକାଶରେ ନିତି ।

❑❑❑

Digitized by PPRACHIN/SOA

# ବଦଳି

କି ଯେ ଆବେଗଟିଏ ମିଳିଯାଏ
ଚାଲିଯିବାରେ ଅନ୍ୟତ୍ର
ଭିନ୍ନ ଭିନ୍ନ ସ୍ଥାନ କାଳ ପାତ୍ରକୁ
ମଜେଇ ଦେବାରେ ରଙ୍ଗରସରେ
ନୂଆ ହାତପରଷାର ଉହକ ହାତ
ଫେରିଯାଏ ପୁନଶ୍ଚ ବାସିକାମକୁ ଅତୀତର
ଚିରାଚରିତ ଘରକରଣାକୁ ।

ଏମିତି ଏକ ବଦଳି ଦର୍କାର
ଯେଉଁଠୁ ଫେରିବାର ପ୍ରଶ୍ନ ନାହିଁ
ପୁନରାବୃତ୍ତିକୁ, ବୃତ୍ତପଥକୁ
ଅନ୍ଧମାଳିକର ଦ୍ୱାର ତ ମୁକ୍ତ ଅବିରତ
କ'ଣ ଚାହ ବଦଳି ନା
ନିଷ୍କୃତି ?

❑❑❑

Digitized by PPRACHIN/SOA

# ଅବସର

- ଏକ -

ଫୁଲମାଳ ନିଅ
ଶା'ଲଟାଏ ବେକରେ ପକାଅ
ସେମିତି ଥାଉ ତମ ମନ୍ତ୍ର ଓ ପ୍ରାର୍ଥନା
ଗାଧୁଆଘର ଭିତରେ ।

ଛକ ଉପରକୁ ଆସି
ବସ୍‌କୁ ଅପେକ୍ଷା ନ କରି
ପାନ ଦିଓଟି କ'ଣ
ଖଣ୍ଡେ ଜର୍ଦ୍ଦାପାନ ନିଜର୍ ତ
ସାଦା ଖଣ୍ଡେ ତାଙ୍କର ।

ପେନ୍‌ସନ୍ ଦିନକୁ
ପୁରୁଣା କୋଟ୍ ଗୋଟିଏ ପିନ୍ଧି
ବାରମ୍ବାର ଘଡ଼ି ଦେଖ ଯେ
ଖସିଯାଏ ଆଶ୍ରାଟିକ
ମୁଣ୍ଡ ଘୂରିଯାଏ ଗହଳିରେ
ଟାଉନ୍‌ବସ୍‌ରେ ।

କେବେ ଅସମୟରେ ବାହାରିପଡ଼
ଆତ୍ମୀୟମାନଙ୍କ ଘରକୁ
କେହି ନ ଥା'ନ୍ତି
କେହି ଜଣେ ନାହିଁ କରେ
ପତ୍ରଭଳି ଗଛର ଶୀର୍ଷରେ ।

Digitized by PPRACHIN/SOA

ଓହରିଯାଏ ସୂର୍ଯ୍ୟାଲୋକ ଦେଇଥିବା କଥାରୁ
ମାଡ଼ି ମାଡ଼ି ପଡ଼େ ଫେରନ୍ତି ରାସ୍ତାରେ ଅନ୍ଧାର
ଏପରିକି ମଧ୍ୟାହ୍ନରେ
ମନେହୁଏ ହାଟ ଓ ବଜାର ସବୁ ହେଣ୍ଟାଳରେ ପରିପୂର୍ଣ୍ଣ ।

ଏବେ ଛୋଟ ପିଲାଟି ପରି ଧୂଳିଧୂସର ଉଲଗ୍ନ
ଅଣ୍ଡରଉଏର୍ ପିନ୍ଧି ଫେରିଆସ
ଗାଧୁଆଘରକୁ ଯେ
ବାପାଙ୍କ ବଙ୍କୁଲି ବାଡ଼ିଟି ଉପରେ
ମୁକୁଟ ଭଳି ଲାଖିଥିବା କାଠଛତୁ
ଯେତେ ଓଟାରିଲେ ବି ଝଡ଼େ ନାହିଁ
ଜିଭ ଦେଖାଏ ।

- ଦୁଇ -

ପରିବାରର ଜଣେ ହେଲେ କେହି
ସେବାନିବୃତ୍ତ ବୋଲି ସେ
ସ୍ୱୀକାର କରନ୍ତି ନାହିଁ ।

ଯେଉଁମାନଙ୍କୁ କଷ୍ଟେମଷ୍ଟେ
ଉଡ଼େଇ ଆଣିଲେ ସେ ଡାକି ଡାକି
ଜଗନ୍ନାଥଙ୍କୁ ଭିତରେ ବାହାରେ
ସେମାନେ ଅଦ୍ୟାପି ଆଶା କରନ୍ତି
ତାଙ୍କଠାରୁ ଅଧିକ ସେବା ।

ପୂର୍ବଠାରୁ ଅଧିକ ଉଡ଼ିବାକୁ ଚାହାନ୍ତି ସେମାନେ
ନିଜ ନିଜ ପିଲାକବିଲାଙ୍କ ସହିତ
ଯଦି କା'ର କିଛି ଦୁର୍ଘଟଣା ହୁଏ
ତାଙ୍କର ସହାୟତା ବେଶତ ଲୋଡ଼ାହୁଏ ।

Digitized by PPRACHIN/SOA

ଯଦି ଅକ୍ଷମ ହୁଅନ୍ତି
ତାଙ୍କୁ ନିଲ୍‌ଡାଉନ୍ ହେବାକୁ ପଡ଼େ ଖରାରେ ଯେମିତି
କାରଣ ତାଙ୍କର ସନ୍ତାନସନ୍ତତି
ପାଲଟିଯାଆନ୍ତି ତାଙ୍କର ଶିକ୍ଷକ ଓ ଶିକ୍ଷୟିତ୍ରୀ ।

ସେମାନେ ଦେବଦେବୀଙ୍କ ନାଁ ଧରି
ତାଙ୍କୁ ଖସିଯିବାକୁ ଆଦୌ ଦିଅନ୍ତି ନାହିଁ
କାରଣ ତାଙ୍କର ପଳାୟନ ମନୋବୃତ୍ତି ପାଇଁ
ତାଙ୍କୁ ଭୋଗିବାକୁ ହେବ ଶାସ୍ତି
ଏପରିକି ଶେଷ ଜୀବନରେ ।

ଓଃ ! ଜଗନ୍ନାଥ କ୍ଷତି ନ କରନ୍ତୁ
କାହାର କିଛି ।

❑❑❑

Digitized by PPRACHIN/SOA

# ଦୃଶ୍ୟ ଚାରୋଟି

## ଲୋହିତ କାଳ

ପଥରଗଦା ଉପରେ କାଠଚମ୍ପାର
ମାସ ମାସ ଧରି ଶୁଖୁଛି ଖରାରେ
ଆଜି ଫୁଲ ଧରିଛି ସେଥିରେ
ଯେପରି କେଉଁ ଛିନ୍ନମସ୍ତାର ସ୍ତନରୁ
ଝରୁଛି କ୍ଷୀର
ମୁଠାଏ ରକ୍ତିମ ସ୍ତବକ
ଖୋଜୁଛି ମସ୍ତକ
ଦିନ ବିତେ
ମନେରହେ ସଞ୍ଜ ଓ ସକାଳ ।

## କ୍ରିକେଟ :

ସକାଳୁ କ୍ରିଜ୍‌ରେ ଠିଆହୋଇଥିବା ଖେଳାଳି
ଛକିଛି ବକଧ୍ୟାନରେ
ଭରପୂର ଗାଲେରି
ବୃତ୍ତାକାର ଷ୍ଟାଡିୟମ୍
ପାହି ଡେଇଁ ଶୂନ୍ୟେ ଶୂନ୍ୟେ
ଉଡ଼ି ଉଡ଼ି କେବେ ଯିବ
ଗୋଟାଏ ସିକ୍ସର
ଊର୍ଦ୍ଧ୍ୱରେ ବୃହଦ୍‌କାୟ ବେଲୁନ୍‌ଟି ସ୍ଥିର
ଅବିଚଳ ହସ କାର୍ଟୁନ୍‌ର ।

## ମାମୁଦ୍

ହାତ ପ୍ରସାରି ପଲଙ୍କରେ
ମାମୁଦ୍ ଶୋଇଛି

Digitized by PPRACHIN/SOA

ପାଣିମୁନ୍ଦେ ବଢ଼େଇବା ହାତ
ଏଯାଏଁ ପହଞ୍ଚିନି
ଅଳଙ୍କାର ସଜାହୋଇଛି ଚାରିପାଖେ
ଶବ ଉପରେ
ଶବ୍ଦ ଉପରେ
ବରଫ ମୁହଁରେ
କଙ୍କାଳ ହସରେ
କବିତାର ରକ୍ତ ଝରିନି ଝରିନି ।

ଆଲିବାବା

ଆଲିବାବା ବସିଛି
ମଣିମୁକ୍ତାର ସ୍ତୂପ ଉପରେ
ଗୁମ୍ଫାର ଦ୍ୱାର
ଖୋଲିଯାଇଛି ଗୋପନ ମନ୍ତ୍ରରେ
ଫାଟିପଡୁଛି ଶବ୍ଦରେ ଅତଳ ଗହ୍ୱର
ଓ ରତ୍ନର ଉଜ୍ଜ୍ୱଳ ହସରେ ଅନ୍ଧାର
ରସର ଉତ୍ସରୁ
ଶୋଷର ରହସ୍ୟ ଝରିନି ଝରିନି ।

❑❑❑

Digitized by PPRACHIN/SOA

# ଶୀତ ସକାଳ

- ଏକ -

ସେ କଳଙ୍କିଲଗା ଚାବିଟି
ମୋ ପାଖରେ ଥିଲା ଆଉ କେତେ ଚାବି ଭଳି
ଚାବି ପେଣ୍ଟାରେ ।

ମୁଁ ଉଠିଲାବେଳକୁ
ସେସବୁ କୋଠରି ଫିଟା ସରିଛି
କିଏ ଜଣେ ଚୋରେଇନେଲା ବୋଲି
କାନ୍ଦ ବୋବାଳି, ହୋ' ହଲ୍ଲାରେ
ଫାଟି ପଡୁଛି ଚଉପାଶ ।

ସବୁ ଜାଣିଥିଲା ପରି ଶୀତ ସକାଳ
ମୃଦୁ ମୃଦୁ ହସୁଛି ଧୂପବାସ୍ନାରେ
ମହମହ ଖିଲିପାନରେ ।

ସବୁ ନିଶ୍ଚିତ
ସମସ୍ତେ ନିଶ୍ଚିନ୍ତ
ଏକା ମୁଁ ନୁହେଁ ।

- ଦୁଇ -

ପ୍ରକୃତ ଶବ୍ଦଟି କିଏ ଚୋରେଇନେଲା
ଯାହା ଅନେକ ଦିନୁ ଚାବି ପଡ଼ି ରହିଥିଲା
ପବନକୁ ପଚାରିଲେ ସେ ଫେରେଇ ଦେଉଛି
ଗୋଟିକ ପରେ ଗୋଟିଏ ପ୍ରତିଶବ୍ଦ
ବୋଧେ ପ୍ରକୃତ ଶବ୍ଦଟି ସେ ବୁଝିପାରୁନି
କୋଳାହଳରେ ।

Digitized by PPRACHIN/SOA

ଛୁଆଟିର ରାହାଧରି କାନ୍ଦିବାରେ
ଖତଗଦାର ପ୍ଲାଷ୍ଟିକ୍ କଣ୍ଢେଇଟି ପାଇଁ
ଏଯାଏଁ କଟାହୋଇନି ଧାନର ଥୁଣ୍ଟା ଥୁଣ୍ଟା ମୂଳ
କାକର ପଡ଼ିଛି
ଅକଟା ଦାଢ଼ି ଉପରେ
ବୁଢ଼ା ଭିକାରିର ।

- ତିନି -

ଘରଚଟିଆମାନେ କେରି କେରି ସୁନାଦୂବ ଉପରେ
ନାଚୁଥିଲାବେଳେ ସକାଳ ଆସିଛି
ମେଳା ସରିଗଲା ପରେ
ସାହିପଡ଼ିଶାଙ୍କ ନିଦ ଭାଙ୍ଗି ଦେଉଥିବା
ଶୁଷୁରି ଓ ପେଁକାଳିର ଧନାଧନ୍ ସ୍ୱରରେ
ସକାଳ ଆସିଛି ।

ଫାଟକ ପାଖେ ଖରା
ହଳଦିଆ ଚାଦର ଢାଙ୍କି
ସେ ହାତ ପତେଇ ମାଗିବ
ଓ ଫେରିଯିବ ତିନୋଟି ମନ୍ଦାର
ବିରକ୍ତରେ ଛିଡ଼େଇ ନେଇ ।

ଆଙ୍କୁଡ଼ି ଓ ଫୁଲଡାଲା ଧରି
କୁହୁଡ଼ିରେ ଯାଇଥିବା ଦେବଭାଇନା
ଫେରିବା ପର୍ଯ୍ୟନ୍ତ ସକାଳ ଥିବ
ସେ ଫେରିଲା ପରେ ଖରାର ସ୍ୱର ବଦଳିଯିବ
କଳି ତକରାଳରେ ଗଳିଲୋକଙ୍କର ।

Digitized by PPRACHIN/SOA

- ଚାରି -

ନିଜର କେହି ନାହିଁ
କିଛି ନାହିଁ ବୋଲି
ସାହିପଡ଼ିଶାରେ ଅବା କାହାର କ'ଣ ନାହିଁ
ଯଦି ନାହିଁ ମୋ' ନ ଥିବା ପାଇଁ
ତାତିଲା ନିଃଶ୍ୱାସ ଟିକେ ।

ଯଦି ଅଛି ଶୀତ ସକାଳେ
ପାଟିରୁ ଧୂଆଁ ପରି କିଛି ।

ସବୁଠି ସବୁ ଅଛି
କାଉଟିଏ ଟେଲିଫୋନ୍ ତାର ଉପରେ
ଟ୍ରକ୍ ଟ୍ରଲି କାର୍ ଶଗଡ଼ ସବୁଠି
ଯାଉଛି ଆସୁଛି ଖବର ବାଣ୍ଟି
ଆହାର ଖୁଣ୍ଟି ।

କେବଳ ଧରାଦେଇଥିବା ଶବ୍ଦଟିର
ଖୋଜଖବର ମିଳୁ ନାହିଁ
ସେ ମୋର ପ୍ରାର୍ଥନାର ମୂଳମନ୍ତ୍ର
ଯାହାର ପ୍ରତିଶବ୍ଦ ନାହିଁ ।

❑❑❑

Digitized by PPRACHIN/SOA

# କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ

କବିତା ବି ଗୋଟିଏ ଶିଶୁ
ପେଟ ନ ପୂରିଲେ କାନ୍ଦେ
କ୍ଷୀର ସର ଲବଣୀ ଯାହା ଦିଅ ପଛେ
ପେଟରୁ ଅଧିକା ହେଲେ ଉଗାରି ପକାଏ ।

ଶିଶୁମାନେ ଜାଣନ୍ତି ନାହିଁ
କେବେ ସ୍କୁଲ୍‌ର ଜଳନ୍ତା ଛପର
ଖସିପଡ଼ିବ ଓ ସେମାନଙ୍କୁ ଭସ୍ମ କରିଦେବ
ସେମାନଙ୍କ ସ୍ୱରସବୁ
ଶୂନ୍ୟକୁ ଫଟେଇଦେଲାବେଳେ
କୁମ୍ଭକର୍ଣ୍ଣ ସହରର ନିଦ୍ରାଭଙ୍ଗ ହେବ ।

ସେମାନେ ଜାଣନ୍ତି ନାହିଁ
ଅଶ୍ୱତ୍ଥାମାର ନାରାଚ
ଚେଚେନିଆର ଆତଙ୍କବାଦ
କାହିଁକି ପ୍ରତିଶୋଧ ପରାୟଣ
ଚଢ଼େଇଙ୍କର ଚେଁ ଚାଁ କାକଳିକୁ
ବନ୍ଦ କରିଦେବା ପାଇଁ ।

ତୁମ ମୋବାଇଲ୍‌ରେ କହିଲ ତ ନାହିଁ
ସେ ଶିଶୁଟି ରାତିସାରା କ'ଣ ଗପୁଥିଲା
କିଭଳି ପ୍ରଳାପ ତା'ର
ଝଡ଼ବତାସର ସ୍ୱର ଭଳି
ସ୍ୱପ୍ନଭଙ୍ଗ କଲା ତମରି ।

Digitized by PPRACHIN/SOA

ସେ' ତ ମତେ ଖୋଜି ଖୋଜି ଆସି
ଶୋଇପଡ଼ିଥିଲା ମୋ ନ ଥିବା ଶେଯରେ
ମତେ ନ ପାଇ କାନ୍ଦିଥିଲା ଏଇଥିପାଇଁ ଯେ
କାଲି ସକାଳେ ତାକୁ କିଏ ଦେଖେଇବ
ସେ ନଈଟିର ସମୁଦ୍ର ଆଡ଼କୁ
ବଙ୍କେଇ ଯିବାର ଦୃଶ୍ୟ ।

ପୋଲାଙ୍ଗ ଫୁଲର ଶେଯରେ
ନାଲି କୁକୁଡ଼ାଟି ଉଡ଼ିଗଲାବେଳେ
ବିକ୍ରେତା ହାତରୁ ଖସି
ଗାଈଟିର ହମ୍ୱାରଡ଼ିରେ
ବାଛୁରୀଟି ତା' ଆଡ଼କୁ ଖେପା ମାରି
ଦଉଡ଼ି ଆସିବ ।

ସେ ମତେ ନ ପାଇ ଫେରିଆସିବ
ତା' ବଦମିଜାଜୀ ବାପାର ସ୍ୱପ୍ନଭଙ୍ଗ ହେଲା ପରେ
ମା'ଠୁ ମାଡ଼ଖାଇ ବାରମ୍ବାର ଫୋନ୍ ଧରିବ
ଭୁଲିଯାଇଥିବା କଥାସବୁ ମୋ'ଠାରୁ ଶୁଣିବାକୁ
ପୂତନାର କ୍ଷୀର ସାଙ୍ଗେ ପ୍ରାଣ ଶୋଷିବାର କଥା
କାଳୀୟ ଦଳନ କଥା
କାଣି ଆଙ୍ଗୁଠିରେ ଗୋବର୍ଦ୍ଧନ
ଉଠେଇବାର କଥା ।

କେଉଁଠି ଅଛି ଆସିବା ଖବର ମୋର
ବାରମ୍ବାର ଅଜଣା ଠିକଣାରେ
ଡାଏଲ୍ କରୁଥିବ
କମ୍ପ୍ୟୁଟର୍ ସାରା ଖୋଜୁଥିବ ।

Digitized by PPRACHIN/SOA

ମୁଁ ନାହିଁ ବୋଲି ଜାଣି ଖାଲି ଧୁ' ଧୁ' ଖରାରେ
କାନ୍ଦି କାନ୍ଦି ଲୋଟିଯାଉଥିବ
କିଏ ଖୋଜି ଆଣିଦେବ
ହଜିଥିବା ଶର ତା'ର
ଯେଉଁଥିରେ ସେ ମର୍ଯ୍ୟାଦା ପୁରୁଷର
ସୂର୍ଯ୍ୟବଂଶ
ଏକାଥରେ ଲୋପ କରିଦେବ ।

❑❑❑

।। ଜାନୁୟାରୀ ୨୦୦୫ 'ଦରବାର'ରେ ପ୍ରକାଶିତ ।।

Digitized by PPRACHIN/SOA

# ଆନମନା ଲୋକଟିର ରାସ୍ତା

ଋତୁ ଆନମନା କରେନା
ରାସ୍ତା ରୋକେ
ଋତୁର ବି ଦାବି ଅଛି
ଦାବି ଅଛି
ହାଉଯାଉ ଆହାର ସନ୍ଧାନୀ ମଣିଷର ।

କୁକୁଡ଼ା ବତକ ଭଳି ରଡ଼ି ଛାଡ଼ୁଥିବା
ହର୍ନଗୁଡ଼ିକର
ବେଗ ହିଁ ଉନ୍ନତି
ଯେତେ ଯିଏ ଯାଉଛନ୍ତି
ସମସ୍ତଙ୍କ ଆଗରେ ପହଞ୍ଚିବାକୁ
ଏ ଗତି
ବାହାରକୁ ଆଖିବୁଜି ଗାଡ଼ି ଚଳେଇବା
କ'ଣ ଅସମ୍ଭବ
ଆନମନା ହେବା ଯେ ଆନମନା
ଆଖି ବୁଜିବା ନୁହେଁ ।

ମିଁନେହୁଏ ଏଇଭଳି ଆନମନା ହୋଇ
ଆଖିବୁଜି ସବୁକିଛି ସବୁଦିନ ପାଇଁ
ଚାଲିଗଲେ ସବୁଆଡ଼େ
ଦିଶୁଥାଏ ସେହି
ହୋଇପାରେ ଯେଉଁଆଡ଼େ ମନ
ତାହାହିଁ ଲକ୍ଷ୍ୟସ୍ଥଳ ।

ନ ହୋଇ ବି ପାରେ ଯାହାସବୁ ଯୋଜନା
ଆକସ୍ମିକ ଦୁର୍ଘଟଣା ବା ନିଶ୍ଚିତ ଘଟଣା
ଯାହା ନିଜ ହାତରେ ନାହିଁ

Digitized by PPRACHIN/SOA

ନିଜ ହାତରେ ଅଛି
ନିଜ ଗାଡ଼ି ଚଳେଇବା
ଆଖିବୁଜି ନୁହେଁ
ଆନମନା ହୋଇ ।

ସେ ଅନ୍ୟଟିକୁ ଏଯାଏଁ
ବୋହିବାକୁ ହେଉଛି ଦୁକ୍ ଦୁକ୍ ଛାତିରେ
ଇତସ୍ତତଃ ଦୃଷ୍ଟିରେ
ସ୍ୱପ୍ନରେ ସ୍ମୃତିରେ ।

ପାଣିପାଗ ଯେତେ ବଦଳୁ
ଆଖିରେ ସେ ଛବି ଥିଲେ
ବାଟ ମୋତେ ଜଣାପଡ଼େ ନାହିଁ ।

❑❑❑

।। 'ସମ୍ବାଦ' ୨୦୦୦ ପୂଜାରେ ପ୍ରକାଶିତ ।।

Digitized by PPRACHIN/SOA

# ବିଛେଦ

ଅନ୍ଧାର ଆସିବା ଆଗରୁ
କାମଦାମ ସାରି ଫେରିଯାଉଥିଲେ ସମସ୍ତେ
ଦି ଢୋକ ପିଇବାକୁ ଦେଇଗଲେ
ପାଗଳ କବିକି
ଅନ୍ଧାରରେ ଆଲୁଅକୁ
ଜଗିବା ପାଇଁକି ।

କିନ୍ତୁ ପାଗଳ କବିଟିକୁ ଜଗିଥିଲା
ସାରାରାତି ସାରାଦିନ ମାଆଭଳି
ଅବୋଧ ମୂର୍ଚ୍ଛନା ତା'ର କବିତାର
ଘୂରି ଘୂରି ପଛେ ପଛେ
ଖରାବର୍ଷା ଛକ ଓ ଗହଳି ।

ତଳେ ପଡ଼ିଗଲେ କେବେ
ରକ୍ତ ପୋଛି ଦେଉଥିଲା
ଢାଙ୍କି ଦେଉଥିଲା ଲଜ୍ଜା
ପାଦ ଖସିଗଲାବେଳେ ହାତଧରି
ଆଶ୍ରା ଦେଉଥିଲା ।

ଶୁଆଇ ବି ଦେଉଥିଲା
ଅବୋଧ ସଙ୍ଗୀତ ତା'ର
ତାକୁ ଘେରି ନାଚୁଥିଲେ
ଧୂଳି ଓ ଶୁଖିଲା ପତ୍ର ।

ଏକ ଅଜଣା ହୃତ୍‌କମ୍ପରେ
ଆଖିର ଗିନାରୁ ଚହଲି ଯାଉଥିଲେ
ମେଘ ତରା ଇନ୍ଦ୍ରଧନୁ
ଓ ଅସୁମାରି ଫୁଲ ।

❑❑❑

Digitized by PPRACHIN/SOA

# ଆଲୋକର ଇସାରା

ଏଠାକାର ପାପ ଭୟ ଅପ୍ରାଧକୁ
ନର୍କକୁ ବିତାଡ଼ିତ କଲା ପରେ
କଳାମେଘ କଟିଗଲା
ପୃଥିବୀର ଗୋଟିଏ ଅଂଶରୁ ।

ସେଠାକାର ସଚ୍ଚୋଟତା ପୁଣ୍ୟ ପ୍ରେମ
ସ୍ୱର୍ଗକୁ ନିର୍ବାସିତ ହେଲା ପରେ
ଧଳାମେଘ ଭାସିଗଲା
ପୃଥିବୀର ଅନେକ ଭାଗରୁ ।

କିଏ କହିବ କେତେବେଳେ
କେଉଁ ପିମ୍ପୁଡ଼ି ଆସନ୍ତି
ନାଲି କି କଳା ପଗଡ଼ି ପିନ୍ଧି
ଘେରନ୍ତି ଶୋଷନ୍ତି ମାଟିର ଶସ ।

ମେଘହୀନ ପୃଥିବୀଟି ଆମର
ଚୁପ୍‌ଚାପ୍ ଘୂରୁଥାଏ ନିଜ ଶୂନ୍ୟତାରେ
ଯେଉଁଠି ମେଘର ସମ୍ଭାବନା ନାହିଁ
ଭଲମନ୍ଦ ଫଳାଫଳ ନାହିଁ ।

ସ୍ୱର୍ଗ ଓ ନର୍କ ଦୁଇଟି ଇଲାକା
ବିବର୍ଜିତ ହେଲା ପରେ
ଧୁକ୍ ଧୁକ୍ ଚାଲିଥାଏ ନିଃଶ୍ୱାସ
ନିଷ୍କଂପ ଦୀପଶିଖା ବିଚିତ୍ର ଏ ପୌରାଣିକ
ଛାଇ ଓ ଅନ୍ଧାର
ଅଲୌକିକ ଆଲୋକର ପ୍ରତି ଆଖିଠାର
ଏକ ତୃତୀୟ ଶକ୍ତିର ।



Digitized by PPRACHIN/SOA

# ସୁଖଦୁଃଖରେ ଆମେ ଦୁହେଁ

- ଏକ -

ଶୀତ ସକାଳରେ ସୂର୍ଯ୍ୟକିରଣ ଟିକେ
ଛାଡ଼ିବା ହେଉ ମଣିମା
ମୁଁ ଯେ କେତେବେଳୁ ଗାଧୁଆ କୁଣ୍ଡରେ
ଥମିଯାଇନି ପୃଥିବୀ
ବୁଜି ହୋଇଯାଉଛି ଆଖି ମୁହୂର୍ତ୍ତଟେ
ରଙ୍ଗିନ ଉଷ୍ମତାରେ
ଗ୍ରୀଷ୍ମକାଳରେ ମଣିମା ତ ଏମିତି ପଡ଼ିଥା'ନ୍ତି
ଚନ୍ଦନକୁଣ୍ଡରେ
ଅଂଶୁଘାତେ ଏ ସହର ମୂର୍ଚ୍ଛାଗଲାବେଳେ
ଟିକେ ହଟିବା ହେଉ
ମୁଁ ଯେ ବସ୍ତ୍ରହୀନ ।

- ଦୁଇ -

ଆପଣ ଓ ମୁଁ
ଏମିତି ବସିଥିଲେ ଗୋଟିଏ ଗାଡ଼ିରେ
ସବୁରି ସାଥିରେ
କିଏ ଗାଡ଼ି ବନ୍ଦ କରିବାକୁ କହି
କାନ୍ଦି ପକେଇ କହିଲା "ମୋ ପୁଅ ଆଉ ନାହିଁ"
ଯାହାକୁ କହିଲା ଝର୍କା ସେ ପାଖେ
ସେ ମୁହଁ ସେ ଦେଖିଛି କି ନାହିଁ
କେଜାଣି
ପୃଥିବୀ ଅଟକିଗଲା ମାଆର ତଣ୍ଟିରେ
ଏକା ଗାଡ଼ି ଅଟକି ନାହିଁ ।

❑❑❑

Digitized by PPRACHIN/SOA

# ଶୂନ୍ୟ କେବେ ନୁହେଁ କକ୍ଷପଥ

ସ୍ୱପ୍ନର ଗୁପ୍ତଚର ସବୁ ମିଥ୍ୟା ସମ୍ବାଦରେ
ଉତ୍ସାହିତ କରିଥା'ନ୍ତି ମାରାଥନ୍ ରେସ୍‌ରେ
ଶେଷ ଦୌଡ଼ ଆରମ୍ଭ କରିଥିବା ଖେଳାଳିକୁ
ବଳ ଖସିଲେ କାହାକୁ ନା କାହାକୁ
ଆଶ୍ରୟ କରିବାକୁ ହୁଏ ।

ଯୌବନର ନୀଳଚିତ୍ର ଦେଖି ଦେଖି
କାଳ କାଟିବାକୁ ହୁଏ ନଚେତ୍ ବରବାଦ
ହେବାକୁ ପଡ଼ିଥାଏ
ସମସ୍ତ ସ୍ନେହୀ ଓ ବୋକା କୁଟୁମ୍ବମାନଙ୍କୁ
ବାଲୁତ ମମତାରେ ସର୍ବସ୍ୱାନ୍ତ ହେଲାବେଳେ
ସୁଖକର ମନେହୁଏ ଲବଣ ସାଗରୁ ଆସି
ମଧୁର ସାଗରେ ଧୀରେ ବୁଡ଼ିଗଲାବେଳେ ।

ବେଇଜ୍ଜତ ଅବସ୍ଥାରୁ ବଞ୍ଚେଇପାରିବନି ମରଣ ବି
ଶେଷରେ ଅଯୋଗ୍ୟ ଅଦରକାରୀ ଘୋଷିତ ହୋଇ
ବିଶ୍ୱାସ ରହିବ ନାହିଁ ଭଲମନ୍ଦ ଅସୁନ୍ଦର ସୁନ୍ଦର ଭିତରେ
ଆକର୍ଷଣ ହଜିଥିବା କକ୍ଷପଥଟିରେ ।

ଯେମିତି ନିର୍ଦ୍ଦିଷ୍ଟ ନାହିଁ କିଛି ବୀଜମନ୍ତ୍ର
ଯାହାକୁ ଭରସା କରି ସବୁ ମୋହ ତୁଟିଯିବ
ଖୋଲିଯିବ ମୁକତିର ଦ୍ୱାର
ସମ୍ଭବତଃ ସବୁକିଛି ଅସତ୍ୟ ଓ ଅକାମୀ ହେଲା ପରେ
ଆଉ କିଛି କ୍ଷେତ୍ର ଅଛି ଯେଉଁଠାରେ ସବୁ ସ୍ୱପ୍ନ
ଶୂନ୍ୟଭଳି ପରିପୂର୍ଣ୍ଣ ଘନବଉଦରେ
ନିଦାଘ ଓ ବର୍ଷାର ଏ ସମ୍ପର୍କ ଭିତରେ ।

❑❑❑

Digitized by PPRACHIN/SOA

# ଆହାର ସନ୍ଧାନ

ବାକି ସମୟରେ ବାୟାର କି ଯାଏ
ବଞ୍ଚିଥିଲା ପରି ସବୁ ହାତଗୋଡ଼ ହଲୁଥାଏ
ନଚେତ୍ ସଭିଏଁ ବ୍ୟସ୍ତ ଗୋଟିଏ କଥାରେ
ରାସ୍ତାରେ ଯାନବାହନ ପକ୍ଷୀ ଆକାଶରେ ।

ମାଛର ଅସ୍ଥିର ଗତି ଗହୀର ଜଳରେ
ଯେ ଯାହାର ଏକା ଏକା
ଅନ୍ଧ ଆଖି ସ୍ୱାର୍ଥର ପରଳ
ସତ୍ୟ ଖାଲି କିଣାବିକା ଗହଳ ଚହଳ ।

ଏତିକିରେ ଭଲମନ୍ଦ ଫଳାଫଳ
ସଫଳ ଓ ବିଫଳ କାହାଣୀ
ଏତିକିରେ ସବୁ ଗୀତ ଥମିଯାଏ
ଜଳସ୍ଥଳ ଆକାଶ ଭିତରେ ।

ଏତିକିରେ ଭିନ୍ନ ଭନ୍ନ ଅନୁଭବ
ଭିନ୍ନ ଭିନ୍ନ କ୍ଷଳନର ରଙ୍ଗ
ସାଲିସ୍ ଓ ବେସାଲିସ୍ ଅସଂଖ୍ୟ ପ୍ରଶ୍ନର
ଶତଫାଳ ଏ ମସ୍ତିଷ୍କ ପ୍ରାଣମୂର୍ଚ୍ଛା ଧାଇଁବାରେ
ଢୋକେ ପିଇ ଦଣ୍ଡେ ଜିଇବାରେ ।

ବାକି ସମୟ ସ୍ୱପ୍ନର ପୋଷାକ ପିନ୍ଧି
ନାନା କିସମରେ ଚଲାବୁଲା କରେ ସବୁ ଭୁଲାମନ
ବ୍ୟାକୁଳ ସନ୍ଧାନରେ ଥାପିବାକୁ ନିଜ ବଡ଼ପଣ
ରାତି ପାହିଗଲେ ପୁଣି ଧାଉଁଥାଏ ମହାଉଲ୍ଲାସରେ ।

□□□

Digitized by PPRACHIN/SOA

# ପାଶବିକ

ହୁଏତ ଘଟଣା ନ ଥିବ କିଛି
ସେତେବେଳେ
ସମୁଦ୍ରରେ ଲହରୀ ନ ଥିବ
ଦୁକ୍‌ଦୁକ୍ ତାରା ଭଳି
ଏ ପୃଥିବୀ ଦୂର ଆକାଶରେ ଘୁଞ୍ଚି
ଠିଆ ହୋଇଥିବ ।

ପ୍ରତିଧ୍ୱନିର ତୁହାକୁ ତୁହା ଡାକରେ
ଚେତିଉଠିବ ଚତୁର ଉପତ୍ୟକା
ଖୋଜିବା ଆଗରୁ କିଛି ଛୁଇଁବା ଆଗରୁ
କାହାଣୀର ଫୁଲଗଛ ଜଳିସାରିଥିବ
ସବୁ ତାରା ଆକାଶର ଲିଭିଯାଇଥିବ ।

ଲୁହର ଶୁଖିଲା ଦାଗ କିମ୍ୱା ହସର ଧଉଳା ରକ୍ତର
ରନ୍‌ୱେଟିରେ
ସ୍ୱପ୍ନର ବିମାନଟି ଅନ୍ଧାରରେ ବାଟ ଖୋଜୁଥିବ
କାଳେ କେଉଁ ଦେବଶିଶୁ
ଅବା ଏକ ଗ୍ରହରୁ ଆସିବ
ବାରମ୍ବାର ମାଟି ତା'ର ଅପେକ୍ଷାରେ ଥିବ୍ ।

ପେଟରେ ନ ଥିଲେ ଭାତ ଭୁଣଟିଏ ଥିବ
ବଣରେ ନ ଥିଲେ ଫୁଲ ତୃଣଟିଏ ଥିବ
ଦେହ ମୋର ସ୍ୱପ୍ନରେ ସବୁବେଳେ
ତାଉ ଖାଉଥିବ
ମିଳିଗଲେ ପାପଭୟ ନ ମିଳିଲେ ମୂକପଶୁ
ଖାଇ ଗୋଡ଼େଇବ ।



Digitized by PPRACHIN/SOA

# ଶେଫାଳିକା

ଏ ଜନ୍ମର ଭବିଷ୍ୟତ୍ ଥିଲା ଯେଉଁଠାରେ
ଏ ମୃତ୍ୟୁର ଅତୀତ ବି ଥିଲା ସେହିଠାରେ ।

ଫୁଲ ଫୁଟିବାର ବେଳ
ପହଞ୍ଚିଗଲା ଆପେ ଆପେ,
କେହି ନ ଥିଲାବେଳେ
ଗୁମ୍‌ସୁମ୍ ମେଘ ଉହାଡ଼ରେ ଥିବା
ଜହ୍ନ ଆଲୁଅରେ ।

ଥିଲା ତା'ର କ୍ଷଣକପାଇଁ ଫୁଟିବାର ଆଶା
ଓ ଝଡ଼ିଯିବାର ସ୍ମୃତି
ସେ କେବେ ନ ଥିଲା ମହକ ହଜିଗଲା ପରେ ପବନରେ
ବାସିଉଠିଲା ଫୁଲର ପରିଚୟ ।

କାଁଟ୍ ଛାଁଟ୍ କରୁଥିବା
ଓ ଝରାପତ୍ର ସାଉଁଟି ନିଆଁ ଲଗଉଥିବା ଅତନ୍ଦ୍ର ମାଳୀଟି
ଫାଟକ ପାଖରୁ ଫେରେଇ ଦେଉଥିଲା ସବୁଦିନ
ସେ ନାହିଁ ଫୁଲ ଭିତରେ କହି ।

ହୁଏତ ପହଞ୍ଚି ସାରିଥିଲି ମୁଁ
ଫେରିଆସିବାକୁ
ଟୋପା ଟୋପା ସିନ୍ଦୂର ବିନ୍ଦୁରେ
ଠପ୍ ଠପ୍ ଖସୁଥିବା ହସରେ ଶେଫାଳିକାର ।

□□□

Digitized by PPRACHIN/SOA

# ତରଙ୍ଗଭଙ୍ଗ

ଫୁଟୁଥିବା ପାଣି ଏଠି
ଘୋ ଘୋ ରାଣୀ
କମକମ ଢେଉ ଆଉ ପକ୍ଷୀ ହାଉଯାଉ
ଢେଉ ପରେ ଢେଉ ଯେବେ ଆସୁଥାଏ ଧାଇଁ
ପହିଲି ଢେଉଟି ପରେ ଭୟ ରହେ ନାହିଁ
ଚାଲିଥାଏ  ଖେଳ କେତେ ଉଦୟ ଅସ୍ତର
କାଦମ୍ବିନୀ ରୋମାଞ୍ଚରେ ନାଚେ ଚକ୍ରବାଳ ।

ନାଚୁଥାଏ ଏକାଭଳି ଶରୀର ଓ ମନ
ବନ୍ଦ ହେବାଯାଏଁ ସବୁ ଢେଉର ସ୍ପନ୍ଦନ
ସୁନାରୁପା ମାଛ ଯେତେ ଚିକ୍‌ମିକ୍ ଖରା
ପବନ ଅଳାଡ଼ିଯାଏ ଫୁଲ କୂଳସାରା
ଢେଉର ଫଣାରେ ନୀଳ ଗରଳର ଫେଣ
ବେଳାଭୂମି ଗାର ଟାଣେ ପକାଇ ତା' ରାଣ ।

ସତ୍ୟ ଲଙ୍ଘେ ନାହିଁ ସିନ୍ଧୁ
                    କୂଳ ଲଙ୍ଘେ ନାହିଁ
ପ୍ରକୃତି ହୋଇଲେ ବାମ
                    କେହି ରହେ ନାହିଁ ।

❑❑❑

Digitized by PPRACHIN/SOA

# ବାଗଦାଦ

ନା ମଦଟିକେ ଡୋକି ହୁଏ
ନା ଫେରିହୁଏ ଦେଶକୁ
ସଦ୍ଦାମର ପରାଜୟରେ ଉଦ୍ଦାମ ମିତ୍ରଶକ୍ତି
ସ୍କଟ୍ ଆଉ ପାଟ୍ରିଅଟ୍ ଟ୍ରାଙ୍କ୍ ଓ ରକେଟ୍
ଦର୍କାର ପଡ଼ିଲା ନାହିଁ ସଙ୍ଘର୍ଷ ପାଇଁ କିଛି ।

ଚିଡିସାପ ପରି ଖପ୍‌ଖାପ୍ ଆକାଶଛତାରୁ
ଖସିପଡ଼ୁଥିବା ଶାନ୍ତିମୁକ୍ତି ନ୍ୟାୟର ପ୍ରହରୀ
ଦେଖନ୍ତି ଶୂନ୍‌ଶାନ୍ ଭୂଇଁ
କେବଳ ଅତିକାୟ ପ୍ରତିମୂର୍ତ୍ତିଟିଏ
ଭାଙ୍ଗୁଥାଏ ଭାଙ୍ଗିଯାଉଥାଏ ।

ଯାହାକୁ ଭାଙ୍ଗିଦେଲା ପରେ ବି
କାଳୀନାଗ ମଳାବାନ୍ଧି ଶୋଇରହେ ପାତାଳରେ
ଓ ବାହାରିଆସେ ପଦ୍ମତୋଳାରେ ଜିଜୀବିଷାର
ଅହମିକାର କ୍ଲାଇମାକ୍ସ ସରିଗଲା ପରେ
ଯବନିକା ପଡ଼ିଯାଏ ।

ଯୁଦ୍ଧ କାହିଁ କାହିଁ ତା' ଆଗ୍ନେୟାସ୍ତ୍ର
ଗୁଳିର ଫାଙ୍କା ଆଓ୍ୱାଜ ଭଳି ଆସ୍ଫାଳନ ତା'ର
କାହାକୁ କରିବାକୁ ହେବ ମୁକାବିଲା ମିତ୍ରଶକ୍ତିର
କାହିଁକି ଏ ନିର୍ଲଜ୍ଜ ଆକ୍ରମଣର ପ୍ରହସନ
କାହାନ୍ତି ସୁଲତାନ ତୈଳାଧିପତି
ଶିଶୁମାନଙ୍କ ମୁଣ୍ଡରେ ଏବେ ବି ଛିଣ୍ଡାଟୋପି
କ୍ରୀତଦାସର
ଏବେ ବି ତୈଳାକ୍ତ ସମୁଦ୍ର
ତେଲ ଜୁଡୁବୁଡୁ ପକ୍ଷିଦଳ
ଅଗ୍ନିର ବଳୟ ।

□□□

Digitized by PPRACHIN/SOA

# ଭଗ୍ନ ପ୍ରାଚୀର

- ଏକ -

ମଣିଷର ମଣିଷକୁ ଭଲ ପାଇବାରେ
ତରଳିଗଲା ନିଷିଦ୍ଧ କାନ୍ଥ ତା'ର
ଏକ ହେଲା ସାର୍ବଭୌମ
ଏକ ହେଲା ଆଦର୍ଶ ପୁଞ୍ଜିବାଦ
ସମାଜବାଦର ।

ଲୁପ୍ତ ହେଲା ରକ୍ତମାଂସ ଆବେଗର
ଭାଗ୍ୟ ବିପର୍ଯ୍ୟୟ
ହୃଦୟର ଦ୍ୱାରସବୁ ଖୋଲିଗଲା
ଶେଷଥର ଏହି ଶେଷଥର ।

ଏସିୟା ବି ଏକ ହେବ ଏକ ହେବ ଇଉରୋପ
ଏକ ହେବ ସବୁ ଦେଶ ସବୁ ମହାଦେଶ
ଜର୍ମାନ !
ତୋ'ର ଗୋଟିଏ ରାଜଧାନୀ
ତୁ ଗୋଟିଏ ସିଂଫୋନୀ
ବ୍ୟାକ୍ ଓ ବିଥୋଭନ୍‌ର ହେସ୍ ଓ ମାକ୍ସମୁଲାର୍‌ର ।

ତମେ କରୁଣାର ନଈକୁ ପାଦଦେବା ମାତ୍ରେ
କେତେ ଯୁଦ୍ଧ କେତେ ଦଙ୍ଗା କେତେ ରକ୍ତ
ଏ ଆକାଶ ଶୋଷି ନେଇଥିଲା
କାଗଜର ଦୁର୍ଗ ପରି ଖସିପଡ଼େ ଆଜି ତାର ଶଙ୍କାର ପାଚେରି
ଅନ୍ଧଶାସନର
ଚତୁର କୂଟନୀତିର ଶୀତଳ ଯୁଦ୍ଧ
ଅଲଙ୍ଘ୍ୟ ପ୍ରାଚୀର ।

Digitized by PPRACHIN/SOA

ଭାଙ୍ଗିଯାଏ ଏହି ଶେଷଥର
ଜର୍ମାନ,
ତରଙ୍ଗାୟିତ ଚେତନାର
ଉତ୍ଥାନ ପତନର ।

ଅବିଶ୍ୱାସ ସନ୍ଦେହର ପାଚେରି ସେ ଉଠିଥିଲା
ମଣିଷ ଓ ମଣିଷ ଭିତରେ
ପାଚେରି ଭିତରେ ଥିଲା ପାଚେରି ବାହାରେ
ପାଚେରି ଗଢ଼ାଥିଲା ଅସ୍ଥିପଞ୍ଜରରେ
ସବୁ ମୂଲ୍ୟ ସବୁ ପ୍ରେମ
ସବୁ ମୁକ୍ତି ମଣିଷର
ଗ୍ରାସିଥିଲା ସର୍ବଗ୍ରାସୀ କ୍ଷୁଧା ଦିନେ
ଜିଦ୍‌ଖୋର ଜହ୍ଲାଦର ଏକଚ୍ଛତ୍ର ଶାସକର ।

ଅକାମୀ ଦସ୍ତାବିଜ୍ ପରି ତାକୁ
ଦୁଇଫାଳ କରି ଦିଆଗଲା
ଆଜି ପୁଣି କି ଯୋଗରେ
ଅତିକାୟ ଶକ୍ତିମାନେ ନତଜାନୁ
ଭାଇଚାରା ନିକଟରେ ମାଟିର ସେ ଦୃପ୍ତ ଆହ୍ୱାନରେ !

□□□

Digitized by PPRACHIN/SOA

# ନଗ୍ନ ଫକୀର

ଯେତିକି ନିଷ୍ପାପ ହେବ ଦେହ
ସେତିକି ନିରାବରଣ ହେବ ।

ସବୁ ଋତୁ ସବୁ ରିପୁ
ତା' ଉପରେ ଦଳି ମକ୍‌ଚି ଚାଲିଗଲା ପରେ
ଭୟ ନାହିଁ ମନ ଯାହା ଚାହେଁ କ'ଣ ଚାହେଁ ନାହିଁ ଦେହ
ନ ହେଲେ ବା ଏତେ କାହିଁ ଆୟୋଜନ
ସ୍ୱଦେହରେ ପହଞ୍ଚିବା ପାଇଁ ସ୍ୱୟଂ ଗ୍ରହଗ୍ରହାନ୍ତରେ ।

ଯେତେ ଥିଲା ଆଭୂଷଣ ଯେତେ ଥିଲା ଅହଙ୍କାର
ବାନ୍ଧିହୋଇ ରହିଥିଲା ହାତଗୋଡ଼
ଐଶ୍ୱର୍ଯ୍ୟ ଓ ନିଃସ୍ୱତା ଭିତରେ
ସେତୁଟିଏ ହେବାପାଇଁ
ନିରହଙ୍କାର ଏ ଦେଶ ନିଃସ୍ୱ ଫକୀରର ।

ଯେଉଁମାନେ ଘେରି ତାକୁ ଦେଖୁଅଛ
ଯୁବକ ଯୁବତୀମାନେ ହାତେ ପୁଷ୍ପଗୁଚ୍ଛ
ତା' ଆଖିର ନିର୍ବାକ୍ ଅକ୍ଷର
ଲେଖିରଖୁ ତୁମ କମ୍ପ୍ୟୁଟର ।

ଯୁଦ୍ଧର ବିଗୁଲ ବି ବଦଳିଯାଏ ବଇଁଶୀରେ ରାମଧୁନ୍‌ରେ
ପାର ଯଦି ଲୁଟିନିଅ କ୍ଷୁଧିତର ସବୁ ହାହାକାର
ପୋଛିଦେଇ ସୀମାରେଖା ଏ ବିଶ୍ୱକୁ କର ଏକାକାର ।

Digitized by PPRACHIN/SOA

ମନେରଖ ଆଜି ତା'ର ଆତତାୟୀ
ବଢୁଅଛି ରକ୍ତବୀର୍ଯ୍ୟ ପରି
ଏ ମନ ବି ପରମାଣୁ ଉଦଜାନଠୁ
ମାରାତ୍ମକ ଭାରି ।

ସାରା ବିଶ୍ୱ ଘୂରି ଘୂରି ଦେଶ ନାମେ ଧର୍ମ ନାମେ
ହତ୍ୟା କରେ ଘରେ ଘରେ ନିରୀହ ମଣିଷ
ହିଂସାହୀନ ମୌନ ମନ ଛିଡ଼ାହୁଅ ନୀରବ ନିଶ୍ଚଳ
ହୃଦୟ ଦର୍ପଣେ ଦେଖ ହସ ତା'ର ମୃତ୍ୟୁରେ ଉଜ୍ଜ୍ୱଳ ।

❑❑❑

॥ ଆମେରିକାରେ ମହାତ୍ମାଗାନ୍ଧିଙ୍କ ପ୍ରତିମୂର୍ତ୍ତି
ତତ୍କାଳୀନ ପ୍ରଧାନମନ୍ତ୍ରୀ ଅଟଳ ବିହାରୀଙ୍କ ଉନ୍ମୋଚନ ଅବସରରେ ଲିଖିତ ॥
॥ ୨୦୦୪ 'ଜୀବନରଙ୍ଗ'ରେ ପ୍ରକାଶିତ ॥

Digitized by PPRACHIN/SOA

# କାଳସଙ୍କେତ

## ଉଦ୍‌ଭଟତା ।୧।

କୁକୁର ଲାଞ୍ଜରେ ଚାବୁକ୍ ମାରେ ସମୟ
ବୈଶାଖର ଧୁ ଧୁ ଖରାରେ
ଖାଲି ଟିଉବୋଲ୍ଟୁମି ହୋଇ ନାହାନ୍ତି
                    କୁତୀମାନେ
                    ଏ ଗଳିରେ ସେ ଗଳିରେ
ପ୍ରତିଟି ମିନିଟ୍‌ରେ କୋଟିଏ ଶିଶୁଙ୍କ ଆଖିରେ
ନିଦ ଆସେ ଷଠୀବୁଢ଼ୀ ହସେ ।

ରାଜମହଲରେ ଅଭାବ କୁକୁଡ଼ା ଖାଦ୍ୟର
ସେମାନେ ଘୂରୁଛନ୍ତି ଚାରିପାଖେ ଅଳିଆଗଦାର
ଟୁଙ୍କୁଛନ୍ତି ଏ ରାସ୍ତାର ନର୍ଦ୍ଦମା କଡ଼ରେ
ଓ ଖାଦ୍ୟ ପାଲଟିଯା'ନ୍ତି ନିଜେ ହିଁ ଶେଷରେ
ସେମାନଙ୍କୁ ଡାଇନିଙ୍ଗ୍ ଟେବୁଲ୍‌ରେ
                    ମୁକ୍ତି ମିଳେ ନିଶ୍ଚିତ ଭାବରେ
ଯେମିତି ବରଫର ତୃଷା ଥାଏ
ମିଶିବାକୁ ସମୁଦ୍ରର ଲୁଣିଆ ପାଣିରେ ।

## ଅଘଟଣ ।୨।

କ୍ଷତ ଶୁଖିଆସିଲାଣି ସାମ୍ରାଜ୍ୟର
ଅଥଚ ଜଳାପୋଡ଼ା କମି ନାହିଁ
ପାହାଡ଼ର ଗୋଟିଏ ଆଖିପତାରେ
ଶୁଖିଲା ତୁଳାଟିକେ ଇନ୍ଧନ ।

Digitized by PPRACHIN/SOA

ଜହ୍ନରାତିରେ ବି ଛତା ଦର୍କାର
ନଚେତ୍ ଉତ୍ତାପ ଚିରିଯିବ
ଏପରି ବି ହୋଇପାରେ ଦୂବଟିଏ
ନଇଁବ ନାହିଁ ମହାବାତ୍ୟାରେ ।

ଯଦି ନିଜ ଉପରେ ବିଶ୍ୱାସ ଅଛି
କାନ ଡେରି ବସ ନାହିଁ
ଅଳିଆଗଦାରୁ ଗୋଟେଇ ଆଣିଥିବା
କାହାର ଅଭିଯୋଗ ପାଇଁ ।

ରଖ ନାହିଁ ନିଜକୁ ଲୁଚେଇ
ଚୋରା ଚାଲାଣରେ ଆସିଥିବା ମାଲ୍ ପରି
ବସ ନାହିଁ ବାରଣ୍ଡାର ନିର୍ଜନ କୋଣରେ
ଭଙ୍ଗା ଘୋଡ଼ାଗାଡ଼ି ପରି ରାସ୍ତାକଡ଼ରେ ।

## ବିଡ଼ମ୍ବନା ।୩।

ସ୍ୱର୍ଗରେ କେହି ନାହିଁ ନିଜ ଘର ନିଜେ ଗଢ଼
ନରକରେ ଗହଳ ଚହଳ
ଯେଉଁଥିରେ ମୁଗ୍ଧ ହୁଅ ତାକୁ ତୋଳିଧର ।

ଦେହ ଦେହ ଭିତରେ ବ୍ୟବଧାନ ନାହିଁ
ଅଛି ଆଜି ହୃଦୟ ଭିତରେ
ଗାଈ ତା' ପହ୍ନାରେ କ୍ଷୀର ଲୁଚେଇବା ପରି
ବାକ୍ସ ଭର୍ତ୍ତି ବିସ୍ମୃତିର ଅପ୍ରାଧରେ ହଜିଥିବା ସୌନ୍ଦର୍ଯ୍ୟର ।

ବିଷ ବି ଭେଜାଲ ଏଠି
ମଦ ଲାଗେ ପାଣି ପରି
ଆକାଶରେ ନୀଳ ନାହିଁ
ନଈରେ ପାଣି ନାହିଁ ଶ୍ରାବଣ ମାସରେ ।

Digitized by PPRACHIN/SOA

କୋବିର ବାସ୍ନା ନାହିଁ
ମାଂସ ଲାଗେ ରବର ଯେପରି
ହସର ବି ଅର୍ଥ ନାହିଁ
କଙ୍କାଳର ମୁହଁ ଧାଡ଼ି ଧାଡ଼ି ।

ପଥର ପରେ ପଥର ମାଛ ପେଟରେ ପଥର
ମୂତ୍ରାଶୟରେ ପଥର
ତୁମ ଆଉ ମୋ ଭିତରେ ସୁଦୃଢ଼ ପ୍ରାଚୀର ।

**ଅସଙ୍ଗତି ।୪।**

ହଁ, ଏପରିବି ଦିନଟିଏ ଆସେ
କ୍ଷୀର ଝରେ ଶବର ସ୍ତନରୁ
ଓ ବୀର୍ଯ୍ୟପାତରେ ମୃତା ନାରୀ
ହୁଏ ଗର୍ଭବତୀ ।

ସମୟ ପୃଷ୍ଠାରେ ମଧ ଏପରି
ପ୍ରବାଦ ଅଛି ଅସମ୍ଭବ ରହେ ନାହିଁ କିଛି
ଜରାୟୁରେ ଉଜ୍ଜ୍ୱଳ ବିନ୍ଦୁ ଯେ
କୋମଳ ଶବ୍ଦଟିଏ
ରାଣୀଙ୍କର ଲୋହିତ ଜଙ୍ଘରେ
ସତେ ଅବା ଗୋପନ କଳାଯାଇ ।

ମତେ ସବୁ ଜଣାଅଛି
ଯେ ଜୀବନ ଦେଇଛି ସବୁ ସେ ବୁଝୁଛି
ଖାଲି ଜଣା ନାହିଁ ବଦଳାଇବା
ଧାରାକୁ ରାଧାରେ
ଯଦିଓ ସମୁଦ୍ର ବି ରହିପାରେ ବିନ୍ଦୁଟେ ତୁଷାର ହୋଇ
ହିମାଳୟ ପରେ ।



Digitized by PPRACHIN/SOA

# କିଭଳି ଏ ଦେଶ ମୋର

କିଭଳି ଏ ଦେଶ ମୋର
କିଭଳିଆ ନାଗରିକ ତା'ର
ଯେତେ ସ୍କାମ୍ ଯେତେ ବଦନାମ
ମ୍ଲାନ କେବେ କରେନା ତା' ନାମ ।

କିଭଳି ଏ ଦେଶ ମୋର
କିଭଳିଆ ଜନତା ତାହାର
ନା ଅଛି ବାସଖଣ୍ଡେ
ନା ମିଳେ ସଭିଙ୍କୁ ଆହାର ।

ବଞ୍ଚିବାରେ ଦୁଃଖ ନାହିଁ
ଛେଳିମେଣ୍ଢା ଘୁଷୁରି ପଲରେ
ଜିଇବାର ନିଶା କେବେ ଭାଙ୍ଗେ ନାହିଁ
ମଶାମାଛି ଅମରୀବଣରେ ।

କିଭଳି ଏ ଦେଶ ମୋର
ଆକୁମାରୀ ହିମାଚଳଯାଏଁ
ଶଠତାର ରଥଯାତ୍ରା
ଭଣ୍ଡତାର ସଙ୍କୀର୍ତ୍ତନ ଚାଲେ ।

ସବୁ ନାଳ ଆବର୍ଜନା
ମିଶିଯାଏ ପବିତ୍ର ଗଙ୍ଗାରେ
ପରିପୂର୍ଣ୍ଣ ତା' ରତ୍ନଭଣ୍ଡାର
ମନଇଚ୍ଛା ଲୁଟ୍‌ପାଟ ପରେ ।



Digitized by PPRACHIN/SOA

# କେବେ ତୁମେ ଦେଖୁଛ ସେ ସ୍ୱପ୍ନ

ଆଖିରୁ ଲୁହ ବୋହେ ନାହିଁ କାହିଁକି କାନ୍ଦୁଛ ତମେ
ହେ ମୋର ପ୍ରତିନିଧି ।

କାନ୍ଦୁଛ ମାଇକ୍‌ରେ ଯେ ତୁମର ସେ ସ୍ୱପ୍ନ ଆଜି ଛାରଖାର
ଶ୍ରୀହୀନ ଓ କଦାକାର
କାହାପାଇଁ, କିଏ ହେବ ଦାୟୀ ସେଥିପାଇଁ ?

କ'ଣ ଥିଲା ତୁମ ସ୍ୱପ୍ନ ଏ ଦେଶ ପାଇଁ ତ
କିଛି ଥିଲା ଯଦି କହିପାର ସେ ସ୍ୱପ୍ନର ନକ୍ସା କ'ଣ
ଅବଶ୍ୟ ତମେ ଧାର କରିଥିଲ ତାକୁ ଅନ୍ୟଠୁ
ଧୂଳିଝାଡ଼ି ଇତିହାସର ।

ଶାନ୍ତି ପ୍ରୀତି ମୈତ୍ରୀ ମୁକ୍ତିର ସେ ଶକ୍‌ତି
ସ୍ୱପ୍ନ ଏକ ରାମରାଜ୍ୟର ପ୍ରଗତି ଓ ସହାବସ୍ଥାନର
ଜାଣେ ତମେ ଦେଖିଛ ସେ ସ୍ୱପ୍ନ
ଅଜଗରଟାଏ ମେଷଛୁଆକୁ ଗିଳିଚାଲିବାର
ହାଡ଼ଖଣ୍ଡକ ପାଇଁ ଚାଲିଛି ଯେଉଁ ଶ୍ୱାନଯୁଦ୍ଧ
ଭାଙ୍ଗି ଦେଇଛି ସବୁ ଆଶା ସବୁ ସ୍ୱପ୍ନ ।

ହେ ମୋର ପ୍ରତିନିଧି ଲୋକସଭା ବିଧାନସଭାର
ଭାବୁଛ ତମେ ଶକ୍ତିମାନ୍ ଉତ୍କଳର ନେତା ସ୍ୱୟଂ ଜଗନ୍ନାଥଠାରୁ
କ୍ରୋଧାନ୍ଧ ହୋଇ ଧାଇଁବା ଭିତରେ ପରସ୍ପର
ତମର ହଜିଯାଇଛି ସଂହତି
ତମର ପରିଚୟ ମୂଳମନ୍ତ୍ର 'ମୈତ୍ରୀଦେବର ।

Digitized by PPRACHIN/SOA

ମନେରଖ ଭାଇ-ଭାଇ କଳହ ଭିତରେ
ଧର୍ମକ୍ଷେତ୍ର ପାଲଟିବ କୁରୁକ୍ଷେତ୍ର କ୍ଷମତାର ଦ୍ୱନ୍ଦ୍ୱଯୁଦ୍ଧ ପରେ
ତୁମକୁ ଚୁପ୍ କରିବାକୁ ଆସିବେନି କେହି
ଯେଉଁମାନେ
ଅନ୍ୟ ରାଷ୍ଟ୍ରକୁ ଗିଳିଦେଲା ପରେ ସୁନାମି
ଚୁପ୍‌ଚାପ୍ ରହିଥା'ନ୍ତି ଶୋଇ
ପାପୀମାନେ ନାଶଗଲେ କହି ।

ଦୁର୍ନୀତିର ପର୍ଦ୍ଦାଫାସ କରିଥିବା ଲୋକଟି
ସର୍ବସ୍ୱାନ୍ତ ହେଲା ପରେ
ଯେଉଁମାନେ କହିଥା'ନ୍ତି ବାହାପିଟି
ଦେଖିଲ ତ ପ୍ରଭୁଙ୍କ ମହିମା
ମୋ ବିରୋଧେ ଗଲାବୋଲି ସେ ଆଜି
ନରକରେ ଶଢୁଛି ଏମିତି ।

ହେ ମୋର ଗଣତନ୍ତ୍ରର ପ୍ରହରୀ ହେ ମୋର ବନ୍ଧୁ ନାଗରିକ
ସତେ କ'ଣ ତୁମ ସ୍ୱପ୍ନ ଥିଲା ଏକ ସତ୍ୟବାନ୍ ମଣିଷର
ଏକ ନିଷ୍କଳଙ୍କ ଦେଶର ?



Digitized by PPRACHIN/SOA

# ଦେଶପ୍ରେମ

ଖେଳ ଚାଲିଥାଉ ଆମର କିଛି ଯାଏ ଆସେ ନାହିଁ
ଗାଲରେ ତ୍ରିରଙ୍ଗାର ଷ୍ଟିକର
ପଡ଼ିଆ ମଝିରେ ଲାଲ ଅଶୋକଚକ୍ର
ଭର୍‌ପୂର ଗାଲେରି
କିଏ ଉଖାଡ଼ିଦେବ ଖାଡ଼ି
ଇଞ୍ଜାମାମ ନା ଗାଙ୍ଗୁଲି ।

ଟି.ଭି.ରେ ଯୁଦ୍ଧ କର୍ଣ୍ଣାର୍ଜୁନର
ଯୁଦ୍ଧ ଚାଲିଛି ଯେ ଚାଲିଛି
ଇଆ ଭିତରେ ଚାଲିଛି ପ୍ରଗତି
ଆଉ ଶହେବର୍ଷ ଲିଜ୍‌ର ବଢ଼ିଛି ମିଆଦି
ଆଉ କେତୋଟି ଖଣି ଖାଦାନ୍‌ରୁ ମାଲିକ
ଆସିଛନ୍ତି ବିଦେଶରୁ ।

ଚୁକ୍ତି ସରିଛି
ଟିଟିଲାଗଡ଼ର ଟିଉଓ୍ୱେଲ୍‌ରୁ
ଲହୁ ଝରୁଛି
ସେମାନେ ଦାନା ବାନ୍ଧିଛନ୍ତି
ପାହାଡ଼ ଖାଲ ଖମାରେ
କ୍ଷତବିକ୍ଷତ ହେଲେ ବି
ଆହୁରି ଉଚ୍ଚା ଆହୁରି ଟାଣ ଲଣ୍ଡାମୁଣ୍ଡ ପାହାଡ଼ର ।

ନକ୍ସଲମାନେ ଆଉ ନାହାନ୍ତି କଲିକତାରେ
ଆନ୍ଧ୍ର କି ଛତିଶଗଡ଼ ସୀମାରେ
ଯେଉଁଠି ହିଂସ୍ରଜନ୍ତୁମାନଙ୍କୁ ଶିକାର କରିବାକୁ ମନା
ଖୋଜା ଚାଲିଛି ସେମାନଙ୍କୁ ସେହି ଜଙ୍ଗଲରେ
ଦରଭଙ୍ଗା ଆଉ କାଠମାଣ୍ଡୁ ଭିତରେ ।

Digitized by PPRACHIN/SOA

ମାଓର ଖୋଳ ଥାଇ ପାଉଁରୁଟି ବଣ୍ଟା ଚାଲିଛି
ବଣ୍ଟା ଚାଲିଛି ଗୁଳିଗୁଳା ବୋମାବାରୁଦ
ଦୋହରା ଦସ୍ତଖତ ଚାଲିଛି ପଞ୍ଚଶୀଳ ଚୁକ୍ତିନାମାର
ଲାଲ ପଗଡ଼ି ମାଟିଆ ହେଲାଣି
କେବେଠୁ
ନାଲିଆଖି ଜଳକା ହେଲାଣି
ନାଲି ନାଲି ପତାକା ପୋତା ସରିଲାଣି
ଚକବନ୍ଦୀ ସରିଥିବା ହିଡ଼ରେ
ଡେଙ୍ଗୁରା ବାଜିଲାଣି ନିଲାମର
କୋର୍ଟ ମାମଲାର ଋଣ ଶୁଝି ନ ପାରିବାର ।

ବକଟେ ଅରୁଆ ଖାଇ
ଦଣ୍ଡ ପ୍ରଣାମ କରୁଛି ରାଉତପୁଅ
ନିଆଁରେ ଚାଲିବ
ତେବେ ଯାଇ ମିଳିବ ଗିନାଏ ହଳଦି
ଗିଲାସେ କ୍ଷୀର ।

ଖେଳ ସରି ନାହିଁ
ଆମର କ'ଣ ଅଛି
ନା ଆମେ କୁରୁକ୍ଷେତ୍ରରେ
ନା ଧର୍ମକ୍ଷେତ୍ରରେ
ଯିଏ ଯୁଆଡ଼େ ଯାଉ
ଆମ ଦାରୁଭୂତ ସେମିତି ହସୁଥାଉ
ଖେଳ ଚାଲିଥାଉ ।



।। ୨୦୦୫ ଏପ୍ରିଲ 'ଇସ୍ତାହାର'ରେ ପ୍ରକାଶିତ ।।

Digitized by PPRACHIN/SOA

# ଭୂସ୍ୱର୍ଗରେ ଭୂମିକମ୍ପ

- ଏକ -

'କେଉଁଠି ସ୍ୱର୍ଗ ଆମକୁ ତା' ଜଣା ନାହିଁ
ସେ ରାଜ୍ୟରେ ସର୍ବଦା ଉପଦ୍ରବ
ସେ ଏଠି ଭୂମିସାତ୍ ଯାହାକୁ ବିଖଣ୍ଡିତ କରି
ଟୁକୁଡ଼ା କାଗଜ କରି ଫୋପାଡ଼ି ଦେଇଛନ୍ତି ଇତସ୍ତତଃ
ସବୁକାଳେ ଆତଙ୍କିତ କାଶ୍ମୀର
ଆମ ଏ ମସ୍ତକ
ଅସ୍ଥିର ଓ କ୍ଷତବିକ୍ଷତ
ବର୍ଦ୍ଧିଷ୍ଣୁ ଆତଙ୍କବାଦୀ
କେବେ ଯାଚନ୍ତି ସ୍ୱାଧୀନ ଦେଶର ପ୍ରତିଶ୍ରୁତି
କେବେ ଛଡ଼ାଇ ନିଅନ୍ତି ଭିନ୍ନବେଶୀ
ଆମ ସୀମା ସରହଦ ।

ସୀମାନ୍ତରେ ସେମାନଙ୍କ ସତ୍ତା
ଓ ସ୍ୱତ୍ୱ ବାରମ୍ବାର ଲୁଣ୍ଠିତ ହେଲା ପରେ
ସେମାନେ ବଞ୍ଚିରହନ୍ତି ଲୁଚି ଲୁଚି
ନିର୍ଜନ ଇଲାକାରେ ମେଷ ପଲଙ୍କ ଭିତରେ
ଚାଲୁଥା'ନ୍ତି ସ୍ୱଚ୍ଛ ହ୍ରଦର ସ୍ଫଟିକ ଜଳରେ
ଚିତ୍ରିତ ପଟୁଆର
କୁସୁମ ତରୀରେ ଭାସିଆସେ ଆଶ୍ୱାସନା
ମହକର କଳ୍ପିତ ସ୍ୱର୍ଗର ।

ତୁଷାର ଝଡ଼ରେ ସେମାନେ ବଞ୍ଚିଛନ୍ତି
ମସ୍ତିଷ୍କରୁ ଝରିଛି ଜ୍ଞାନର ଗଙ୍ଗା
ପ୍ରୀତିର ଯମୁନା ଆଉ ଛନ୍ଦର
ସରସ୍ୱତୀ ।

Digitized by PPRACHIN/SOA

ମାନସ ହ୍ରଦର ହଂସ
ତା'ର ଧବଳ ଡେଣାରେ
ନିସ୍ତରଙ୍ଗ ଜଳଦର୍ପଣରେ
ଦେଖୁଛି ଉଦୟଦୀପ୍ତି
ରକ୍ତିମ ତା' ପ୍ରତିକୃତି ।

ସବୁ ଅସ୍ଥିରତା ଡେଇଁ
ଏଇଠି ତ ଆଶ୍ରିତ ନିର୍ଝରିଣୀ
ଏଇଠି ତ ବନ୍ଦ ସବୁ କଳରବ
ଆନନ୍ଦ ଏ ନିତ୍ୟଧାମ ଗୋଲକର ।

- ଦୁଇ -

ଏବେ ସୀମାହୀନ ଚତୁର୍ଦ୍ଦିଗ
ଚତୁର୍ପାଳ ମସ୍ତକ
ଭୂଲୁଣ୍ଠିତ ଭୂସ୍ୱର୍ଗ
ଦଳ ଦଳ ବିପନ୍ନ ଘୂରୁଛନ୍ତି
ପରସ୍ପରର ପଲ୍ଲୀରେ
ରିଲିଫ୍ ପାଇବା ପାଇଁ ।

ପରସ୍ପରକୁ ଜାବୁଡ଼ିଧରି କାନ୍ଦିଛନ୍ତି
ଦୀପ ଜଳେଇ ଚିହ୍ନିପାରିଛନ୍ତି
ପରସ୍ପରର ସମ୍ପର୍କ ଓ ଆତ୍ମୀୟସ୍ୱଜନଙ୍କୁ
ଏ ଭୂମିକମ୍ପ ଖୋଲି ଦେଇଛି ବାଟ
ପୋତି ହୋଇଥିବା ବରଫରୁ ଉଠୁଛି ଧୂଆଁ
ଉଠୁଛି ତାତି
ନିଃଶ୍ୱାସର ତାତି ।

ଏବେ ନିବିଡ଼ ହୋଇଛି ରାତି
ଖୋଜା ଚାଲିଛି ସମ୍ପର୍କର ଆତ୍ମୀୟତା
ଆଶ୍ଳେଷରେ
ଆଲିଙ୍ଗନରେ ।

□□□

Digitized by PPRACHIN/SOA

# ଯୋଗମାୟା

ତମେ ଏତେ ପାଖରେ ଆସି
ଶୋଇପଡ଼ିଥିଲ ଯେ
ମୋ ପତ୍ନୀ ଆଉ ମୋ ମଝିରେ
ମୁଁ ଛୁଇଁ ପାରୁ ନ ଥିଲି ତମକୁ ।

ହଟେଇବା ତ ଦୂର କଥା
ତମ ନାଁ ମନେପଡ଼ିବା ମାତ୍ରେ
ସର୍ବାଙ୍ଗ ଯୋଉଠି ଥିଲା ସେଇଠି
ଜିଭଠୁ ପାଦର କାଣୀ ଆଙ୍ଗୁଠି
ହୋଇଗଲା ଲାଠି
ତୁମ ହଳଦି ରଙ୍ଗର ସୁନାଦେହ
ଏପରି ଆଲୋକରେ ମଣ୍ଡିଛି ତମ ଆକୃତି
ଯାହା ସୂର୍ଯ୍ୟରୁ ଅଧେ ଓ ଜହ୍ନରୁ ଅଧେ ନେଇ ପଡ଼ିଥିଲା
ଶୋଇ ରହିଥିଲା ।

କେବଳ ଚନ୍ଦନଚର୍ଚ୍ଚିତ କରି
ବର୍ଣ୍ଣିବାକୁ ହେବ ଦେହ ତମର
ତଥାପି ସହିହେବ ନାହିଁ
ଜଳିପୋଡ଼ି ପାଉଁଶ ହୋଇଯାଉଥିବି ମୁଁ
ତମ ଦେହ ବିଦ୍ୟୁତ ପ୍ରବାହରେ
ସାନ୍ନିଧ ତମର ଲୋଡ଼ା କି ଅଲୋଡ଼ା
ମତେ କେହି ପଚାରି ନାହିଁ
ଓ ମୋର ଅର୍ଦ୍ଧାଙ୍ଗିନୀଙ୍କୁ ବି ।

ତାଙ୍କ କଥା ନ କହିବା ଭଲ
ତାଙ୍କୁ କେମିତି ଲାଗୁଥିବ ତୁମ ଉପସ୍ଥିତି

Digitized by PPRACHIN/SOA

ମତେ ଜଣା ନାହିଁ
ହୁଏତ ସେ ବି ନ ଥିବେ ଜାଣି
କିଛି ବି
କାରଣ ଯିଏ ମୋ ପାଖରେ ଶୋଇଥିବେ
ସେ ଶେଷ କରିସାରିଥିବେ ମୋ ସମ୍ପର୍କ ସବୁଠି ।

ମତେ ନ ଛୁଇଁ ସେ
ରକ୍ତ ମୋର ଶୋଷି ନେଉଥିବେ ନିଃଶ୍ୱାସରେ
ନାସିକାର କାଉଁରୀ ହାଡ଼ରେ
ତାଙ୍କୁ ଏତିକି କହିପାରେ
ଯେମିତି ଦେଇଥିଲ ସେମିତି ନେଇଗଲ
କସ୍ତୁରୀ ଏ ଦେହରୁ
ଓ ଦେହ ପଡ଼ିରହେ ଏହା ପରେ
ବାସିଫୁଲ ଭଳି ।

ଅଳିଆ ଟୋକେଇରେ ପଡ଼ିବାକୁ
କିଛି ଜାଣିପାରି ନ ଥିବା ଅନ୍ଧୁଣୀ ଅର୍ଦ୍ଧାଙ୍ଗିନୀ
କେବଳ ଚୁମୁଥିବେ ଫୁଲକୁ ନିଜର ମନେକରି ।

❑❑❑

Digitized by PPRACHIN/SOA

# ସାଥୀ ଭଉଣୀ

ମୁଁ ସେହି ସାତୋଟି ସ୍ତ୍ରୀଲୋକଙ୍କ କଥା ଭାବୁଛି
ସେ ଚିର ସଧବା ନାରୀ
ପ୍ରତ୍ୟେକ ରାତି ଦୀପଟିଏ ଧରି
ଯା' ଆସ କରୁଥା'ନ୍ତି
ମାର୍କଣ୍ଡ ପୋଖରୀରୁ କଳ୍ପବଟ ଯାଏଁ
ଅଥଚ କେହି ଦେଖନ୍ତି ନାହିଁ ସେମାନଙ୍କୁ ।

ଦେଖୁଥିବେ କାଁ ଭାଁ କେହି
ଯେମିତି ତ୍ରିନାଥ ପରିଡ଼ାର ବିଧବା ସ୍ତ୍ରୀ
ହେରୋଇନ୍ ଖାଉଥିବା ତା' ଦାଗୀ ପୁଅକୁ
ଧର୍ମଶିକ୍ଷା ଦେଲାବେଳେ କହୁଥାଏ ସେ ବିଷୟରେ
କିଛି ନ ଜାଣି
ସେମାନେ ସାଥୀ ଭଉଣୀ କି ସାତ ଭଉଣୀ
ଏସବୁ ହିସାବକୁ ନ ନେଇ ।

ମୁଁ ଓସ୍ତଗଛ ମୂଳେ ଗଳି ମୁଣ୍ଡରେ
ହାତୀଆସୁଣୀଙ୍କ ପାଖରେ ଏକା ଏକା ଥାଏ
ଅନ୍ଧାରରେ କେବେ ଦିଶିବ ସେ ଦୀପ
କେବେ ପୋଖରୀର ସାତତାଳ ପଙ୍କରୁ
ଉଠିଆସିବ ମାଣିକ ନଅର ।

ତୀର୍ଥରେ ବୁଡ଼ମାରି
ଉଦୁଉଦିଆ ଖରାବେଳେ
ଯାତ୍ରୀ ପଇସା ଖୋଜୁ ଖୋଜୁ
ଯେମିତି ମାଙ୍କଡ଼ପାଢ଼ୀ ପାଇଥିଲା
ଗୋଟାଏ ଯଜ୍ଞଯୂପ ଓ ତାଳପତ୍ରଟାଏ
କୋଉ ବ୍ରହ୍ମାଙ୍କ ପୋଥିରୁ ।

Digitized by PPRACHIN/SOA

ମୁଁ ଯେମିତି ଖୋଜୁଥାଏ
ନ ଅଙ୍କ ଦୁର୍ଭିକ୍ଷରେ ନିଜ ନିଜ ଛୁଆ ଖାଇ
ବଞ୍ଚିଥିବା ମାଆମାନଙ୍କୁ
ତୀର୍ଥର ରକ୍ଷୟିତ୍ରୀମାନଙ୍କର ବୀଭତ୍ସ ରୂପରେ ।

କେହି କେହି ଦେବୀ
କଳ୍ପବଟମୂଳେ ସଭା ସାରି
ଫେରିବେଣି ଯେ ଯାହା ପୀଠକୁ
କେବଳ ସମଲେଇ ପହଞ୍ଚି ନ ଥିବେ
ମହାନଦୀର ତୁଠରେ
ନ ହେଲେ ମଙ୍ଗଳା ଭଗବତୀ ଚର୍ଚ୍ଚିକା
ବିରଜା ଭଣ୍ଡାରିକା ଆଦି ପହଞ୍ଚି ସାରିବେଣି
ଯେ ଯାହା ମନ୍ଦିରେ
ଶୂନ୍ୟ ମହାପ୍ରସାଦ ଧରି ଆକାଶମାର୍ଗରେ ।

ଖାଲି ଝାପ୍ସା ଗଳିର ଆଲୁଅରେ ମୁଁ ଘରକୁ ଫେରିଲାବେଳେ
ସଦ୍ୟ ଗର୍ଭପାତ କରି ଆସିଥିବା ମୋ କାମବାଲୀ ଝିଅଟିର
ଖଙ୍କାପେଟକୁ ଆଉଁଶି ତା'ର ମାଆ କାନ୍ଦୁଥିବ
ସେ ଟ୍ରଲିବାଲାର ନାଁ ଧରି ବାହୁନି ଚାଲିଥିବ ।

ଝିଅଟିର ଚାପାକାନ୍ଦରେ ଉଠାଣି ନ ଉଠିପାରି
ମୁଁ ଇତସ୍ତତଃ ହେଉଥିବି
ଶୁଣି ପାରୁ ନ ଥିବି ପାପୀର ନାଁ କ'ଣ
ବୁଝିପାରୁ ନ ଥିବି ପାପର ପରିଭାଷା
ଝିଅଟିର ଅସ୍ପଷ୍ଟ କାନ୍ଦରୁ ।

ଆମ ସାହି ଠାକୁରାଣୀ ଅଲେଇ ବଲେଇ କେହି
ଛପି ଯାଉଥିବେ ମୁହଁ ଲୁଚେଇ ଖଣ୍ଡେ ଧଳାଶାଢ଼ି ପିନ୍ଧି
ସରୁ ହାଡ଼ିଗୋହିରୀଟିରେ ଗୋଠଛଡ଼ା ଗାଈଭଳି
ଏତେ ରାତିରେ ମୁଁ ସେମାନଙ୍କୁ କେତେ ବା ଖୋଜିବି
ଆଉ କାହିଁ ବା ଖୋଜିବି ?

❑❑❑

Digitized by PPRACHIN/SOA

# ମହାରୋଷ

ଅନେକ ଥର ମାଡ଼ିଆସିଛି ସମୁଦ୍ର
ଝଡ଼ବତାସରେ କି ସୁନାମିରେ
ଶ୍ରୀମନ୍ଦିର ଦକ୍ଷିଣ ଦରଜା ଦେଇ
ଫଉଜ ପଶି ଆସିଛନ୍ତି
ଢେଉର ଡୋପରେ ଉଡ଼େଇ
ସୋଲ ଭଳି ବଡ଼ ବଡ଼ ସାଆଁଳ ପଥର ।

ଆଣ୍ଠୁ ଭର୍ତ୍ତି ପାଣିରେ କାକୁସ୍ଥ ମୁଁ
ମୋ ପଛପଟେ ବେଣାଗଛ ଘାସ ଗୁଚ୍ଛୁକଙ୍କ
କାହାନ୍ତି ସେ ଐରବଂଶୀ
ଜୀର୍ଣ୍ଣ ସଂସ୍କାର ପାଇଁ ଉଦ୍‌ଗ୍ରୀବ ପୃଥୁଦକ ।

ମା' ଭଉଣୀ ଶୋଧାବକା ଶୁଣୁଥିବା
ନିଅଣ୍ଟିଆ ଦେବଦେବୀଙ୍କ ଦାନ୍ତରଡ଼ି
ପ୍ରଦୂଷିତ ପଞ୍ଚଭୂତର କ୍ରୋଧରୁ
ନିଶାଖୋରଙ୍କ ହ୍ରେଷାରବର ଜୁଆରରୁ
ଧର୍ମବେପାରୀଙ୍କ ଜାଲରୁ
କିଏ କରିବ ଉଦ୍ଧାର
ତଳିତଳାନ୍ତ ଏ କ୍ଷେତ୍ରକୁ ।

ତଥାପି ରାସ୍ତାଟିଏ ସମୁଦ୍ରରୁ
ସେତୁବନ୍ଧ ଭଳି ଲମ୍ବିଆସେ
ଦୁଇପାଖ ଜଳଭର୍ତ୍ତି ମହାବେଦୀକୁ
ସେ ସେତୁବନ୍ଧ ଉପରେ ଦୁଇହାତ ଊର୍ଦ୍ଧ୍ୱକୁ ଟେକି
ଠିଆ ଯେଉଁ ମୁଣ୍ଡିତ ଗୋରାଲୋକ
ଡାକୁଛନ୍ତି କୋଳେଇ ନେବାକୁ ଭୋଳ କରି ଜନସମୁଦ୍ରକୁ
ଅଥଚ ନିଜେ ମିଶିଯିବେ ସମୁଦ୍ର ଭିତରେ

Digitized by PPRACHIN/SOA

ମୁଁ ବେଣା ଆଉ ସନ୍ତରାବଣରେ
ଫେଣର ବିଷରେ ନୀଳାଭ କରିଛି ମୋର କଳେବର
ଦ୍ୱାରକା ନିମଗ୍ନ ପରେ ।

ଜଳୁଥାଏ ଯେଉଁ ଦେହ ଅଗୁରୁ କାଠର
ଜଳିବା ତା' ଶେଷ ହୁଏ ନାହିଁ
ଅଲୌକିକତା ସହିତ ବାସ୍ତବତାର
ଏ ନିର୍ବନ୍ଧ ଓ ସନ୍ତୁଳନ ଭିତରେ
ବଞ୍ଚିବାକୁ ହୋଇଥାଏ ବିଚରା ସମୟକୁ ।

ନା ଧରିପାରୁଛି ଏ ଦେହ ନା ଛାଡ଼ିପାରୁଛି
ସବୁବେଳେ ମନ୍ଦିର ଘୁଞ୍ଚି ଆସିଛି
ସମୁଦ୍ରର ସୁନାମିଠାରୁ ନିଜକୁ ବଞ୍ଚେଇ
ଶିଉଳିଲାଗି ଦଧିନଉତି
ଓ ଅଁଳାବେଢ଼ା ଦିଶୁଛି ଉଦାସୀ ଉଦାସୀ ।

ମୋ ଲୁହ ମୋ ଗାଲରେ
ମୋ ଲହୁ ମୋ ପାଦରେ
ଏମିତି ଭାଙ୍ଗିପଡ଼ିବ ଦିନେ ନୂଆ ଘର
ଏମିତି ଚାପିଦେବ ବେକ
ଦିନେ ସମୁଦ୍ରରୁ ଉଠି କେଉଁ ପ୍ରଳୟର
ଆନାକୋଣ୍ଡା ହାତ ।

❑❑❑

Digitized by PPRACHIN/SOA

# ସୁଜାତା

ସେ ନାହାନ୍ତି ଗିନାଏ କ୍ଷୀରୀ ଧରି
ଠିଆ ହେଲାଣି କୋଉକାଳରୁ ସୁଜାତା
ଆସିବେ ଆଉଥରେ ଏମିତି ପ୍ରତିଥର
କ୍ଷୀରୀ ଖାଇ ଯାଉଥିବେ ତା' ହାତରୁ ପ୍ରତି ଜନମ୍‌ରେ ।

ସୁଜାତା ଠିଆ ହୋଇଥିବ ପିପ୍‌ପଳ ବୃକ୍ଷକୁ ଚାହିଁ
ଅନଶନରେ ଥିବା ଇତର ପକ୍ଷୀକୁ
ଯିଏ ବାରମ୍ବାର କହୁଥିବ ସେ ଆସିବେ
ଆଉ ରୋଷେଇ କରି ଷଡ଼ରସ ବସିଥିବୁ
ବିତିଯାଉ କାଳ ।

ସେ କେମିତି ନ କହି ନ ପୁଛି ଚାଲିଗଲେ ଯେ
କାନିରେ ପୋଛିଦେଲେ ଓଠ ପାଣି ପିଇ ମାଟିପାତ୍ରରେ
ମୁଠାଏ କଅଁଳ ଖରା ପରାଗ ବିଞ୍ଚିଦେଉଥିଲା
ତାଙ୍କ ଗେରୁଆ ଲୁଗାରେ ଏବଂ ତାଙ୍କର ଓଠ
ଦିଶୁଥିଲା ଯେପରି ପ୍ରବାଳ ।

କୋଉ କଥା ଅଙ୍ଗେ ଲିଭେଇ ନାହାନ୍ତି ସେ
କେତେ ସେ ଦେହରେ ବୋହି ଯାଇ ନାହିଁ
ରକ୍ତର ସିଆର କାଟି ପୁଣ୍ୟତୋୟା ନଦୀ
ସେ କେଉଁଠି ଧ୍ୟାନରେ ବସିଥିବେ
ଅବଶ୍ୟ ଜାଣି ନାହାନ୍ତି ନିରଞ୍ଜନା ଅବା ଚର୍ମଣ୍ୱତି ।

ସଙ୍ଘର ସଭାଗୃହରେ ତାଙ୍କର ଥିରି ଥିରି ଉଚ୍ଚାରଣ
ଶୁଭୁଥିଲା ଗୁଣାପାଲା ଭଳି
ଓ ସମସ୍ତେ ନିର୍ବାକ୍ ଚାହିଁ ରହିଥିଲେ
ସେ କହିପାରୁ ନ ଥିଲେ କିଛି
କେଉଁ ଦୁଷ୍ଟ ତାନ୍ତ୍ରିକର ଅଙ୍ଗୁଳି ଇସାରାରେ
ବନ୍ଦ ରଖିବାକୁ ପଡୁଥିଲା ମୁହଁର କୋଲପ ।

ହଲପ୍ ନେବାକୁ ପଡୁଥିଲା ଓ ଆଦେଶ ଥିଲା

Digitized by PPRACHIN/SOA

ସମସ୍ତଙ୍କଠୁ ବିଦାୟ ନେଇ ଚାଲିଯାଅ ପଛେ
ମୁହଁ ଖୋଲି କିଛି କହ ନାହିଁ
ନଚେତ୍ ସାରାଜୀବନ ବଦଳାଇବାକୁ ପଡୁଥିବ କଥା
ଯୋଜନା ଓ ଚିନ୍ତା
କାମର ତରିକା ଯାହା ଥାଉ ପଛେ
ସବୁ ଯୋଗ୍ୟ ବଦଳିବା ପାଇଁ ।

ଜ୍ଞାନର ତ ଅନ୍ତ ନାହିଁ
ଚର୍ଚ୍ଚାର ତ ଶେଷ ନାହିଁ
ଏପରିକି ମୁକ୍ତିର ସ୍ୱାଦ ଲାଗୁଥିବ କଷାହରିଡ଼ା ପରି
ଜିଭରୁ ଶୁଖିଯାଉଥିବ ଲାଳ ଆଉ କିଛି ସ୍ୱାଦ ପାଇଁ
ବରଡ଼ାପତର ପରି ଥରୁଥିବ ସାରା ଦେହ ସାରା ଅବୟବ ।

ସମସ୍ତ ସତ୍ତାର ଆୟୋଜନ ଏପରି ପବିତ୍ର ମନରେ
ଚାଲିଥିଲା ଯେ ପ୍ରତିଟି ସ୍ତମ୍ଭରେ ଝୁଲୁଥିଲା ଦେହ ତାଙ୍କର
ମାଂସ ବେପାରୀ ଝୁଲାଇଲା ପରି ଛେଳିମେଣ୍ଢା ଗୋରୁ କି ମହିଷ
ପବନରେ ଦୋହଲୁଥିଲା ବସ୍ତ୍ର ତାଙ୍କ ପ୍ରତି ତୋରଣରେ
ଥରି ଥରି ଥରୁଥିଲା ସ୍ୱର ।

ସେ କିପରି ଆସିବେ ଜଣା ନ ଥିଲା ସୁଜାତାକୁ
ସେ ଯେପରି ଆସନ୍ତୁ ଦିନ ଥିବ ଉଜ୍ଜ୍ୱଳ ଦର୍ପଣ
ନ ଥିବ କାହାର ଛାଇ ଆନନ୍ଦ ଦୁଇ ଆଖି ବ୍ୟତୀତ
ସୁଜାତା ଯେ ନିଜେ ସ୍ୱଦେହରେ ସଂବୃତ କରିଥିବ
ଦେହ ସେହି ତଥାଗତଙ୍କର

କାହାଠୁ ଶିଖିବାକୁ ପଡ଼ିବ ନାହିଁ କେଉଁ ଗୁରୁଙ୍କଠାରୁ
ଅଗୁରୁ ବିଦ୍ୟା ସେହି ପ୍ରତ୍ୟାଭୂତି ଅଗୁରୁ ଧୂପ ଭଳି
ମହକେଇ ଧୀରେ ଧୀରେ ଜଳିଯାଉଥିବ
ଜଳିଯାଉଥିବ ରୂପସୀଙ୍କ ସହସ୍ର ଦେହରେ
ଧୂମାଭ ଶରୀର
ସହସ୍ର ଯୋଗିନୀଙ୍କର ଜଠରାଗ୍ନିରେ
ଏକମାତ୍ର ଭୋକ ଥିବ ନିଷ୍ପାପ ଶିଶୁର ।

❑❑❑

Digitized by PPRACHIN/SOA

# ବର୍ଜିତ

କିଛି କିଛି ତ୍ୟାଗ କରିବାକୁ ହୁଏ
ଯାହାକୁ ନେଇ ଏ ପଞ୍ଚଭୂତ
ତା'ର ବିଷ ତା'ର ଆବର୍ଜନା
ବର୍ଜିତ ହେଉଥାଏ ଜନ୍ମରୁ ମୃତ୍ୟୁଯାଏ ।

ଉତ୍ସର୍ଗର ଏ ମହାନ ପ୍ରକ୍ରିୟା କ'ଣ
ଆରମ୍ଭ ହୁଏ ନର୍ଦ୍ଦମାରୁ
କିଏ ବା ଭାଗୀ ନୁହନ୍ତି ଏଥିରେ
ଏକ ଦୁଇ ଜାଣି ନ ଥିବା ବାଳୁତଠୁ
ମଳମୂତ୍ରରେ ଘାଣ୍ଟି ହେଉଥିବା
ବୟୋଜ୍ୟେଷ୍ଠ ଯାଏଁ ।

ଆମର ଅଇଁଠା ଆମର ଛେପ ଖଙ୍କାର
ପିକ କୁଳକୁଞ୍ଚା ଆଉ ଅନ୍ୟାନ୍ୟ ଅନାବଶ୍ୟକ
ପରିତ୍ୟକ୍ତ ବସ୍ତୁର ବିଶ୍ୱସ୍ତ ଡଷ୍ଟବିନ୍ ଏ ନର୍ଦ୍ଦମା
ଗୁପ୍ତରେ ମିଶିଛି ଯାଇ କେଉଁ ନଦୀ
କେଉଁ ସମୁଦ୍ରରେ ।

କଟାକୁକୁଡ଼ା ଛେଳିମେଣ୍ଢା ଗୋରୁ ରକ୍ତ
ଫିନାଇଲ୍ ଗନ୍ଧ ପୂରି ମାଛିମଶାର ବାସଗୃହ
କି ଯେ ଅନ୍ଧାରରେ ମିଶେ
ସହରର ଶିରାପ୍ରଶିରା ଦେଇ ସୋରେଜ୍
ଓ କେନାଲ ଭିତରେ ।

ସବୁଠି ସମାନ ବ୍ୟବହାର ତା' ପ୍ରତି
ସବୁରି ଘରେ ତା'ର ଉପସ୍ଥିତି ଉପକାରୀ ବନ୍ଧୁ ଭଳି
ଏ ସହରେ ଯେତେ ଚୋରା ଅବୈଧ କାରବାର
ଯେତେ ଆମ ଦୁର୍ଭାବନା କୁତ୍ସିତ ବମନ
ଘରେ ଘରେ ନର୍କରେ ନିଃଶ୍ୱାସ ନିଏ ପ୍ରତ୍ୟେକ୍ ମଣିଷ ।

Digitized by PPRACHIN/SOA

ଗଙ୍ଗା ହେଉ କି ଯମୁନା
ସମସ୍ତେ ପୂତିଗନ୍ଧମୟ ଅଥଚ ଏ ପବିତ୍ର ଆତ୍ମାକୁ
ଗ୍ରହଣ କରନ୍ତି ନିଃସଙ୍କୋଚ ଏକା ସମୁଦ୍ର ନୁହେଁ ।

ଏପରି ପତିତ ବର୍ଜିତମାନଙ୍କ ମୂଲ୍ୟ
ଏ ମଣିଷ କେବେ ନିର୍ଦ୍ଧାରଣ କରିବ
ଅବଶ୍ୟ ସମୁଦ୍ର ନିହାତି ଅମଙ୍ଗ ହୋଇ
କୂଳକୁ ଫେରାଇଦେବ ଫଟାକୁଲା ଛିଣ୍ଡା ଛାଞ୍ଚୁଣି
ଆଟିକା ଚାଉଳ ପୋଲା ପଇଡ଼ ଭଳି
ନର୍ଦ୍ଦମାର ବହଳ ପଙ୍କ ଆଉ ଦୁର୍ଗନ୍ଧକୁ
ପଠେଇଦେବ କୂଳର ଭଦ୍ର ଜଗତକୁ ।

ଭ୍ରମଣକାରୀ ନାକରେ ରୁମାଲ କି ପଣତକାନି ଗୁଞ୍ଜି
ଯା' ଆସ କରୁଥାଆନ୍ତି
ଓ ଛାଡ଼ି ଦେଉଥାଆନ୍ତି ଅଲକ୍ଷ୍ୟରେ
ସବୁ ବିଷ ସମସ୍ତ ଜୀବାଣୁ ସେହି ନର୍ଦ୍ଦମାରେ
ଯେମିତି ତାଙ୍କର ବାସଭୂମି ଏ ପୃଥିବୀ
ସଂକ୍ରମିତ ନ ହୁଏ ।

ସେହି ଉପାୟରୁ ଜାତ ଏକ ସୁନ୍ଦର ପଥ
ଏ ପୂତିଗନ୍ଧମୟ ସଂସାରରୁ ନିଷ୍କ୍ରମଣ ହେବାର
ମୁନିସ୍‌ପାଲିଟି କି କର୍ପୋରେସନ୍‌କୁ ଜଣେଇଦେବାର ଅଛି
ପୂତର ପତ୍ନୀ ପୂତିର ଏ ପରିଚୟ ।

❑❑❑

Digitized by PPRACHIN/SOA

# ଆୟତି

ବିଶ୍ୱାସ ଏପରି ସାହସ
ଯାହା ଭାଙ୍ଗିବାକୁ ଗଲେ
ଦୁଇଗୁଣ ବଢ଼େ ତା'ର ଶକ୍ତି
ଭାଙ୍ଗେନା ।

ଚେତନା ଏପରି ଏକ ନୈତିକତା
ଯାହା ନିଦ୍ରାରେ ଆହୁରି ଯୋଗାଡ଼ କରେ
ସାମର୍ଥ୍ୟ
ଯାହା ରିଚାର୍ଯ ହେବାର ଥାଏ ମୋବାଇଲ ଫୋନ୍ ପରି ।

ତମେ କିଛି ନ ଥାଇ ବି ବାଟ ଚାଲିପାର
ଧାଇଁପାର ଭୟ ଓ ଆତଙ୍କରେ
ଅଣନିଃଶ୍ୱାସୀ ହୋଇ ।

ବାହାରେ ହଂସା ଉଡ଼ିଗଲା ପରେ କିବା
ବୁଟ୍ ମାର୍ଚ୍ଚ କରି କିଏ ଚାଲିଗଲା ପରେ
ଦୁଆର ଫାଙ୍କରେ ତମେ ଦେଖୁଥାଅ
କାହାର ଶବାଧାର ନେଇ ଧାଏଁ ପଟୁଆର ଏକ ।

କିଛି ଫରକ ପଡ଼େନା ଏଭଳି ଜୀବନର ମରଣ ସହିତ
ଯଦି ତମେ ପାଦଟିଏ ପକାଇବାକୁ ଚେଷ୍ଟା କରୁଥାଅ
ଯାହା ବଞ୍ଚେଇପାରିବ ଜୀବଜଗତକୁ
ସେତିକି ତମର ଯୋଗାଯୋଗ
ଶକ୍ତି ସାମର୍ଥ୍ୟ ନୈତିକତା ସହିତ ।

Digitized by PPRACHIN/SOA

ବରଂ ଅଜାଣତରେ ତମେ ପ୍ରେମ କରି ବଶୀଭୂତ ହୋଇଯାଅ
ଯାହାର ପଛେ ପଛେ ତମେ ମନ୍ତ୍ରମୁଗ୍ଧ ହୋଇ ଯିବାକୁ ଭଲ ପାଅ
ଭଲ ନ ପାଇଲେ ବି ତା'ର ଭଲ ପାଇବାର ଥାଏ ଆକର୍ଷଣ
ଯିଏ ଟାଣିନିଏ ତମକୁ ମୂଢ଼ତାରୁ
ଜଡ଼ତାରୁ
ବଞ୍ଚିବାର ସାର୍ଥକ ସ୍ୱର୍ଗକୁ
ହୁଏତ ମନେ ହୋଇପାରେ ତମେ ଯେଉଁଠି ଥିଲ ସେଇଠି
ନିଜର ଶୁଭମନାସରୁ ଘୁଞ୍ଚି ନାହଁ ପାଦଟିଏ ବି ।

❑❑❑

Digitized by PPRACHIN/SOA

# ବୀର ରାମଚନ୍ଦ୍ରପୁର

ହାତୀ ଦୁଇଟି ପାଦରେ ଦଳିଦେଇ ନ ଥିଲେ
ତଳିତଳାନ୍ତ ସେ ଲୋକଙ୍କୁ
ମୁଁ ମନେପକେଇ ପାରି ନ ଥା'ନ୍ତି ମୋ' ଗାଁ ।

ସେ ଗାଁର ମାଟି ନେଇ ଯାଇଥିଲି ଗୟା
ଫୋପାଡ଼ି ଦେବାକୁ ପ୍ରେତପର୍ବତରେ କିଛି
ତ କିଛି ବ୍ରହ୍ମଯୋନିରେ
ବାଜା ବଜେଇ ଅଶରୀରୀ କଙ୍କାଳମାନଙ୍କୁ
ମୁଁ ପହଞ୍ଚେଇ ଦେଇ ଆସିଲି ଯେଉଁଠୁ
ଫେରିବାର ନାହିଁ ଆଉ ଥରେ ।

ମତେ କଳାମେଘଭଳି ସେ ହାତୀଶୁଣ୍ଢ
ଉଠେଇନେଲା ଉପରକୁ
ଯଦିଓ ସମସ୍ତେ ଭାବୁଥିଲେ ସେ ମିଶେଇଦେବ
ସେ ମାଟିରେ ମତେ
ବଞ୍ଚିବାକୁ ବାରମ୍ବାର ସେ ମାଟିରେ ।

ଭଲ ହୋଇଥା'ନ୍ତା ଜନ୍ମ ନେଇଥା'ନ୍ତି ସେ ମାଟିରେ ପୁନର୍ବାର
ଯେଉଁଠୁ ଚାଲିଆସି ଥିଲି ଲୋକେ ଗାଁକୁ ପଦା କରି
ଚାପୁଡ଼ାକେ ମୁହଁକୁ ବଙ୍କା କରି କନକଦୁର୍ଗାଙ୍କର
ଆଉ ଫେରିବେନି କହି ।

ପୁଣି ଆରମ୍ଭ ହୁଅନ୍ତା
ଆମ ବଂଶ ପରମ୍ପରା
ମୁଁ ପହଞ୍ଚିଲେ ତାଳଗଛମାନେ ତାଳପତ୍ରରେ
ଲେଖା ହେବାକୁ ଥିବା ପାଠ ଶୁଣାଉଥାଆନ୍ତେ
ପବନରେ

Digitized by PPRACHIN/SOA

ନଡ଼ିଆ ଗଛ ବି ନଇଁ ଆସିଥା'ନ୍ତା
ବଢ଼େଇବାକୁ ତା'ର ବାହୁଙ୍କାର ଆଙ୍ଗୁଠିରେ
ମୋ ଭାଗ୍ୟର ଅଲେଖା ଲିପିକୁ ।

ଏତେ ଉଚ୍ଚକୁ ଉଠିଗଲି ଯେ
ଆକାଶ ବି ଲାଗିଲା ଛୋଟ
ବାଣ ଫୁଟିଲେ ଚମକି ଚାହିଁଲା ଶିଶୁଭଳି
ମୋ ସହର
ସତ ମୁଁ ଭେଟିବି ଯା' ପରେ
ଯାହାକୁ ଭୟ
ତା'ଠାରୁ ଉଦ୍ଧାର ପାଇଁ କି ।

ସେଥିପାଇଁ ଶୋଷରୁ ଫେରେଇଦେଲି ନଦୀ
ବୃକ୍ଷକୁ ଫେରେଇଦେଲି ସବୁ ଭୟ
ହିଂସ୍ରଜନ୍ତୁଙ୍କର
ନିଃଶ୍ୱାସ ଫେରେଇଦେବି ବୋଲି ପବନକୁ
ତିଆର ଥିଲି ମୁଁ
ସମଗ୍ର ଶରୀରକୁ ପାହାଡ଼ର ଜଳନ୍ତା ନିଆଁକୁ
ଏ କଥା ଭାବି ଯେ
ଦିନେ ଜଳିବେ ସମସ୍ତେ ନଚେତ୍ ମିଶିବେ ମାଟିରେ ।

କୋଉ ନୂଆ କଥା ଏ ଯେ
ମୁଁ ଯିବି ସେ ଗାଁକୁ ପୁରୁଖାଙ୍କ ସମ୍ପର୍କ ଲୋଡ଼ିବି
ବରଂ ହାତୀ ଉପରେ ବସିବାର ସୌଭାଗ୍ୟ ସୁଫଳ
ଫେରାଇଦେବା ପାଇଁ ମୁଁ ଆସିବି ସେ ଗାଁକୁ
ସେ ବଣୁଆ ଦନ୍ତା ପାଖକୁ
ଶୋଭା ଓ ଲକ୍ଷ୍ମୀ ଭଳି
ପୋଷାହାତୀଙ୍କୁ ଡାକିବି
ଶିମୁଳିପାଳରୁ ବନ୍ଦୀ କରିବାକୁ ତାକୁ
ମାୟା ମାଧୁର୍ଯ୍ୟରେ ।

Digitized by PPRACHIN/SOA

ବରଂ ନିଶ୍ଚେତକ ଗୁଳି ଖାଇ ଶୋଇ ଉଠିଲାବେଳକୁ
ସେ ଦେଖିବ ତା' ଭଳି ବିଶୁଥିବା ଚେହେରାମାନଙ୍କୁ
ସାଥୀଟେ ମିଳିଲେ ହାତୀ ହଲିଚହଲି ଫେରିଯିବ
ନା ବୁଲୁଥିବ ଅରଣ୍ୟ ନ ପାଇ ଏହିଭଳି ବିସ୍ଥାପିତ ହୋଇ
ଖସି ପଳେଇଥିବା ଅନ୍ୟ ହାତୀଟି ପରି ।

ଏହାହିଁ ହୁଏ ଜଣେ ଭୋଗେ
ଜଣେ ଖସିଯାଏ
ପୁନଶ୍ଚ ଦୁଃଖର ସାମ୍ନା କରିବାକୁ
ମୁଁ କିନ୍ତୁ ଦୁଃଖରୁ ଖସିଯାଉଥିବି
ଏପରିକି ତାକୁ ଡାକିବି ଉଡ଼ି ଉଡ଼ି ଯିବାପାଇଁ
ମେଘ ଉହାଡ଼କୁ ।

ସେ ମତେ ଉର୍ଦ୍ଧ୍ୱକୁ ଟେକିବା ମାତ୍ରେ ମୁଁ ପଠେଇ ଦେଇଛି
ମୋ ଆତ୍ମାକୁ ପଦ୍ମଫୁଲରେ ସେ ମୁହୂର୍ତ୍ତରେ
ସେ ବି ଆରତରେ ଆକ୍ରମଣ ଭୟରେ ମୋ ସହିତ
ପ୍ରାର୍ଥନା କରୁଛି ।

ଯୁଗ୍ମସ୍ୱରରେ ଗାଢ଼ ହୋଇଛି ନୀରବତା
ଆହୁରି ଖାଁ ଖାଁ ଲାଗିଛି ଆକାଶ
ବଣ ବିଲ ସହର
ସେ ମତେ କଚାଡ଼ି ନ ମାରି ପାଦରେ ଦଳି ଦେଉନି କାହିଁକି
ତଦ୍ୱାରା ମୁଁ ଥାଆନ୍ତି ମୋ ମାଟିରେ ବ୍ରାମ୍‌ଚନ୍ଦ୍ରପୁରେ ।



*( * ଏକଦା ହଇଜାରେ ଗାଁରେ ଅନେକ ଲୋକ ମଲେ । କନକଦୁର୍ଗାଙ୍କ କୋପରୁ ଏପରି ହେଲା । କିନ୍ତୁ ଏହାର ପ୍ରତିବାଦରେ ଦୁର୍ଗାଙ୍କର ମୁହଁକୁ ଚାପୁଡ଼ାଏ ମାରି ଜଣେ କେହି ତାନ୍ତ୍ରିକ ବଙ୍କା କରିଦେବା କଥା ପ୍ରବାଦ ଅଛି ।)*

Digitized by PPRACHIN/SOA

# କଳିଙ୍ଗନଗର

- ଏକ -

ଫାଡ଼୍
ଚିର୍
ଏ ଦସ୍ତାବିଜ୍
ରୁଗ୍‌ଣ ଇସ୍ତାହାର ।

କବିତାରେ ଏ କେଉଁ
ବନ୍ଦନା ତୋର
ଏ କେଉଁ କାମନା
କୁର୍ଣ୍ଣିସ୍ ହେବାର ଛଇ.
କୁତ୍ତାଭଳି
ଲହ ଲହ ଲାଳସାର
ଜିହ୍ୱା ମେଲି ।

ସଲାମ୍ ଦେବା ଭଙ୍ଗୀ
ଉଠ୍ ବସ୍ ହେବାର କାଇଦା
ନିଜେ କରୁ
ଅନ୍ୟକୁ ଶିଖାଉ ।

ତୋର ଗୁଳିଗୁଳା ଫୌଜ୍
ତୋର ରାଜକୀୟ କୁର୍ଚି
ଚୌକିଦାର
ଦଫାଦାରମାନଙ୍କ
ହେପାଜତ୍
ଧରିପାରେନା
ଝାଳ ସରସର ଦେହ ତୋର ।

Digitized by PPRACHIN/SOA

ନିଶରେ ଅତର
ମୌଜ୍ ମଜଲିସ୍‌ର ଲାଲ ଆଖିରେ
ତୁ ପଡ଼ିବା ଆଗରୁ ତଳେ
ତୋ' ଧକ୍‌କାରେ
ସେମାନେ ଘୁଞ୍ଚି ଯାଆନ୍ତୁ ଥରେ ।

ଲୁହା ପଞ୍ଜୁରିରେ
କାବ୍ୟ ପାଠ
ତତେ କରିଛି ଗଦିନସିନ
ନତ ମସ୍ତକ
କାକୁସ୍ତଭର ।

ଆଣିବା ଲାଗି
ଶାଲ୍ ସାଲିୟାନା
ମକର କୁଣ୍ଡଳ
ସ୍ୱର୍ଣ୍ଣମୁଦ୍ରା
ରୌପ୍ୟଥାଳରେ
ପରଷୁଥିବା ପରୀଙ୍କର
ଟହଟହ ଜବାଧର
ଡାକିଆଣିଛି ତତେ
ମନ୍ତ୍ରମୁଗ୍ଧ ପଶୁସମ
ବଳିପାଇଁ
ସାମିୟାନା ତଳେ ।

- ଦୁଇ -

ପରବର୍ତ୍ତୀ ଦୃଶ୍ୟ ଯା'ର
ଖାଁ ଖାଁ ଶ୍ମଶାନର
ମଠଗାଦି
ମିଥ୍ୟାରେ ଚାଲିଥିବା ପୂଜାପାଠ

Digitized by PPRACHIN/SOA

ଅନ୍ୟାୟର ସତ୍ୟପାଠ
ପାଠ
ଗୀତା ଭାଗବତ
ଆଉ ବେଦବେଦାନ୍ତର
ନିରୁତ୍ସାହ ପରିବେଶ
ଗିରିଗୁହା ଆଶ୍ରମ
ନିଶାସକ୍ତ ଯୁବକମାନଙ୍କ
ନିର୍ବୀର୍ଯ୍ୟ ଆଡ୍‌ଡାଖଟି
ତାତ୍ସଲ୍ୟ
ଭକୁଆ ସମ୍ବାଦ
ଓ ଆତଙ୍କବାଦ ।

- ତିନି -

ମୁଁ ତ ଭାସିଯାଉଛି
ବୋହିସାରିଥିବା ରକ୍ତନଦୀରେ
ଅରଣ୍ୟରୁ କାନ୍ତାରରୁ
ହେବାକୁ ଥିବା ଶିଳ୍ପ ନଗରୀର
ଖାଁ ଖାଁ
ବିଲ ଓ ଟାଙ୍ଗର ଡେଇଁ
ମୁଁ ତ ଭାସିଯାଉଛି
ଉବୁଟୁବୁ ବାରମ୍ବାର ହୋଇ
ବିଷର ଯମୁନାରେ
ଧାର ଧାର ବହେ
ଅନ୍ଧନଈ ।

ହୋ ହୋ ଶୃଗାଳ ପଲରେ
ମତେ ବୋହିନେଉଥିବା ଲୋକେ
ଧାଡ଼ି ଧାଡ଼ି ଟ୍ରକ୍‌ଡାଲାରେ
ରାଜାଘର ଖାନା

Digitized by PPRACHIN/SOA

ସାଧବର ସାଜସଜ୍ଜା
ରଙ୍ଗାରଙ୍ଗ କାର୍ଯ୍ୟକ୍ରମ ପାଇଁ ।

ଆଖିଠାର
ଡାକହାକ
ଫୁସୁଲାଫୁସୁଲି
ଆଉ ସାକୁଲା ସାକୁଲିର
ଯେତେ ଛୁରୀଧାର
ଜୟଗାନ କର ତା'ର
ଗାଅ ଗୀତ
ଧନ୍ୟ ଧନ୍ୟ ଦେଶ ମୋର
ଧନ୍ୟ ରାଜ୍ୟବାସୀ
ଧନ୍ୟ ଧନ୍ୟ ନେତା ମୋର
ଧନ୍ୟ ସୁଖବାସୀ

- ଚାରି -

ମୁହଁ ଫେରାଇ
ଫେରିଯାଉଛି ନଈ
ବିଦୀର୍ଣ୍ଣ
ଧାର ଧାର
ଭୟଙ୍କର ନିଃଶ୍ୱାସ
ଅହିର
ଭେଦିଯାଏ କ୍ଷେତ
ଜନପଦ
ଖେଦିଯାଏ ବାଲି
ବାଲୁଚର ।

ଶୁଭୁଛି ଫୁତ୍କାର
ଲହରିର

Digitized by PPRACHIN/SOA

ବାରଣ କରେ
ଉଦ୍‌ଫଣ
ଉଗାରି ଫୋପାଡ଼ି ଦିଏ
ସମୁଦ୍ର
ପ୍ରଦୂଷିତ ସ୍ରୋତ ଯେତେ
ଭ୍ରଷ୍ଟ ପଟୁଆର ।

ଏକା ଏକା ଆସିପାର
ଯେତେବେଳେ ଏ ସମୁଦ୍ର
ବାର୍ତ୍ତା ନେଇ ଆସୁଥିବ
ରକ୍ତାକ୍ତ ସୂର୍ଯ୍ୟର
ଏକତ୍ର ବି ହୋଇପାରେ
ଯେଉଁଠି
ପ୍ରତିଟି ମୁହୂର୍ତ୍ତ ସ୍ଥିର
ଅବିଚଳ
ସମବେତ ହୋଇପାର
ନିଶାର୍ଦ୍ଧରେ
ସୂର୍ଯ୍ୟର ବନ୍ଦନା ପାଇଁ
ପ୍ରସ୍ତୁତ ପରିପାର୍ଶ୍ୱ
ପ୍ରତ୍ୟେକଟି ସ୍ଥାନ କାଳ ପାତ୍ର ।

ମନ୍ତ୍ରାବିଷ୍ଟ
ପୁଷ୍ପୋଚ୍ଛଳ
ସମତଳ
ସୁଶୀତଳ
ସେ ପବନ
ପ୍ରକମ୍ପିତ ବେଳାଭୂମି
କରିପାରେ ଏକା ସମତଳ ।

Digitized by PPRACHIN/SOA

ଚୋଳାଏ ଜଳାଞ୍ଜଳି ଦେବା ପାଇଁ
ଚାହିଁଥାଏ
ଚନ୍ଦ୍ରଭାଗା କୂଳ
ହୋଇପାରେ ସେଦିନ ସୁନୀଳ
ଆଉ ସ୍ୱର୍ଣ୍ଣ ଝଲମଲ ।

- ପାଞ୍ଚ -

ଆମେ ବି ନ ଥିବା ଏଠି
ଏମିତି ଆଖି ବୁଜିବା
ଖୋଲିବା ଭିତରେ
ଗୀତ ଥିବ ।

ଗୀତ ଥାଏ
ମାଇକ୍‌ର ଗୀତ ଯେବେ
ଶୋଇଯାଏ
ଗଛପତ୍ର ଧୂଳିର ଉପରେ
ଚୁପ୍‌ଚାପ୍
କାକରର ଶବ୍ଦ ଯେବେ
ଯାଏ ଘୁଞ୍ଚି ଦୂରକୁ ଦୂରକୁ
ଯାଏ ତା'ର ପ୍ରତିଧ୍ୱନି
ଶତ ପ୍ରତିଧ୍ୱନି ହୋଇ
ଉଭେଇ ଯିବାକୁ ।

ତମେ ଆସ
ସହସ୍ରଧାରାରେ ବୋହି
ବୋହିଆଣ
ନୌକାର ପାଲରେ ସାଇଁ ସାଇଁ
ପବନର ବେଗ
ସ୍ରୋତର ଗତିଭଙ୍ଗ

Digitized by PPRACHIN/SOA

ମାତ୍ରାଲ ରାତିର
ଯେତେ ଛିନ୍ନଛତ୍ର
ଭୋଜିଭାତ
ଚର୍ବ୍ୟ ଚୋଷ୍ୟ
ଲେହ୍ୟ ପେୟ
ନିକ୍ଷିପ୍ତ ଏ ଝାଉଁବଣେ
ସୁସ୍ଥିର ହେବାଯାଏଁ
ବିକ୍ଷିପ୍ତ ମୁହୂର୍ତ୍ତ
ବୋହି ଆଣ
ବେଭାର ସମ୍ଭାର
ନାହା ବାହି ଆଣ ।

- ଛଅ -

ସଂସାର ଇତସ୍ତତଃ
ସମୁଦ୍ର ଉତ୍କ୍ଷିପ୍ତ
ନଦୀର ପ୍ରବେଶ ନାହିଁ
ସାଗରର ଗଭୀରତା
ଛୁଇଁପାରେ ନାହିଁ
ଉଚ୍ଛନ୍ନ ହୋଇ ସେ ଧାଏଁ
ବ୍ୟାକୁଳ ବତାସ
କେବେ ସୁନାମିରେ
ପଶିଯାଏ
ଶହ ଶହ ମୁକ୍ତିକାମୀ ଦେହ
କେତେ ରଖେ
କେତେ ସେ ଫେରାଇଦିଏ
ହିସାବ ଯା' ନାହିଁ
ସମୁଦ୍ରର ଆଦି ଅନ୍ତ
ବାପା ମା'
କିଛି ଠିକ୍ ନାହିଁ ।

Digitized by PPRACHIN/SOA

ତଥାପି ହାତକୁ
ହାତରେ ଛନ୍ଦ
ବଜ୍ର କର
ରକ୍ତାକ୍ତ ବି ହୁଅ
ହେ ମୋର ଆସନ୍ତାକାଲି
ଆଖି ଫିଟି ନ ଥିବା
ହେ ମୋର ଅଧମ ଶିଶୁ
କେତେ ବାଟ
ବିଷମ କଟକରୁ
କଳିଙ୍ଗନଗର ?

❑❑❑

Digitized by PPRACHIN/SOA

# କବି

ଆଗାମୀ ପୃଥିବୀ ଓ ଆଜିର ପୃଥିବୀ ଭିତରେ
ସେ ଏକ ସେତୁ
ସେ ଏକ ସ୍ୱଚ୍ଛ ଝରଣା ପ୍ରତିଟି ତୃଷାର୍ତ୍ତ ପ୍ରାଣର
ସୁନ୍ଦରତାର ନଦୀଜଳରେ
ବଢ଼ି ଉଠିଥିବା ବୃକ୍ଷଟିଏ ସେ ଫଳବତୀ
ଯାହାପାଇଁ ବ୍ୟାକୁଳ
ଏତେ କ୍ଷୁଧାର୍ତ୍ତ ହୃଦୟ ।

ସେ ଏପରି ଏକ କୋକିଳ
ଯାହା ସାନ୍ତ୍ୱନା ଦିଏ ପୀଡ଼ିତ ପ୍ରାଣରେ
ମଧୁରତମ ମୂର୍ଚ୍ଛନାର ଅନାହତ ଚେତନା ସେ
ଦିଗନ୍ତରେ ଭାସିବୁଲେ ସତେ ଅବା ଧଳାମେଘଟିଏ ।

ଧୀରେ ଉଠେ ଓ ପ୍ରସରିଯାଏ
ଆକାଶର ମୁହଁ ଉଜ୍ଜ୍ୱଳତାରେ ପରିପୂର୍ଣ୍ଣ କରେ
ଜୀବନଭୂମିରେ ସେ ଖସିପଡ଼େ ଫୁଲଶେଯରେ
ସମସ୍ତ ପାଖୁଡ଼ା ଖୋଲିଦେଇ ଆଲୋକକୁ
ଆମନ୍ତ୍ରଣ କରି ।

ସେ ଏକ ଦେବଦୂତ
ଯାହାକୁ ପଠେଇଛନ୍ତି
ମହିମାମୟୀ ଦେବୀ ।

କବି ଘୋଷୁଥା'ନ୍ତି ତାଙ୍କରି କିମ୍ବଦନ୍ତୀ
ଅପରାଜିତ ଅନ୍ଧାରରେ
ପ୍ରଜ୍ଞାର ନିଷ୍କମ୍ପ ଶିଖାରେ ।

Digitized by PPRACHIN/SOA

ଝଡ଼ବତାସର ଅଲିଭା ଶିଖା ସେ
ଭରପୂର ସ୍ନେହରେ
ଯା'ର ଆଲୋକବୀଣାରେ ଝଙ୍କୃତ
ପ୍ରୀତିମୟ ସ୍ୱର ।

କବି ତ ନିଃସଙ୍ଗ ବ୍ୟକ୍ତି
ଠକିଯାଇଛି ତା'ର ସରଳତାରେ
ଦୟାଳୁ ପଣରେ
ପ୍ରକୃତି କୋଳରେ ଥାଏ ତା'ର ପ୍ରେରଣା
ଓ ଆଶ୍ୱାସନା ନେଇ
ରାତିର ନୀରବତା ଯାଏଁ ବସିଥାଏ ଅପେକ୍ଷା କରି
ଦେବତାର ଅବତରଣ ପାଇଁ ।

ସେ ଝରେ ବର୍ଷାବିନ୍ଦୁ
ଯେ ତା'ର ପ୍ରାଣର ବିହନ ବୁଣେ
ମମତାର କ୍ଷେତରେ
ମାନବିକତା ସେ ଫସଲ ବୋହିନିଏ
ବଞ୍ଚିବା ପାଇଁ
ଲାଳନ ପାଳନ ପାଇଁ ନିଜର ।

ସେ କବି ଯାହାକୁ ଲୋକେ
ଜୀବନସାରା ଅବହେଳା କରିଚାଲିଛନ୍ତି
ଏବଂ ଯେ ସ୍ୱୀକୃତ କେବଳ
ଏ ଧରଣୀରୁ ବିଦାୟ ନେଲା ପରେ ।

ସେ ହିଁ କବି ଯେ ସମବେଦନା ଚାହେନା
ମାଗେ ଟିକେ ହସ
ସେ ହିଁ କବି ଯାହା ଚେତନାର ଉତ୍ତରଣ
ଭରିଦିଏ ଉଦ୍ୟାନସାରା ସୁନ୍ଦର କାକଳି
ତଥାପି ତା'ର ପ୍ରତିଭାର ବିକାଶ ପାଇଁ ବିମୁଖ ଏ ଜନତା ।

Digitized by PPRACHIN/SOA

ଯେଉଁମାନେ ସୁବିଧା ସୁଯୋଗ ନେଇ
ଉଚ୍ଚ ହୋଇ ଡିଣ୍ଡିମ ପିଟନ୍ତି
କେତେ ଦିନ ସେମାନେ ଏଡ଼ାଇ ଚାଲିବେ ତାକୁ
ଯେ ଭରିଦେଇଛି ସତ୍ୟ ପ୍ରେମ ଶାନ୍ତିର ସଞ୍ଜୀବନୀ
ସେମାନଙ୍କ ମୃତ ଜୀବନରେ
ଯେପର୍ଯ୍ୟନ୍ତ ଏ ମଣିଷ ଏ ମୃତ ଆତ୍ମାକୁ
ସମ୍ମାନ ଦେଇ ଜୀବିତଙ୍କୁ ଭୁଲିଯାଇଛି
ଯେଉଁମାନେ ମହମବତି ଭଳି ଜଳି ଜଳି ସରିଯାଇଛନ୍ତି
କେବଳ ଆଲୁଅ ଦେଇ ଅଜ୍ଞାନ ଲୋକଙ୍କୁ
ସେମାନେ ଦେଇଛନ୍ତି ଆଲୁଅର ରାସ୍ତା
ସେ କବି ।

କବି ତମେ ହିଁ ଏ ଜୀବନର ଜୀବନ
ତମେ ଜୟଲାଭ କରିଛ ଏ ଯୁଗବକ୍ଷରେ
ଅନେକ ବାଧାବିଘ୍ନ ଡେଇଁ ।

କବି ତମେ ଦିନେ
ହୃଦୟର ସାମ୍ରାଜ୍ୟକୁ
ଶାସନ କରିବ ହିଁ କରିବ
ତେଣୁ ତମ ସାମ୍ରାଜ୍ୟର ଅନ୍ତ ନାହିଁ
ତମ କଣ୍ଠାର ମୁକୁଟକୁ ପରୀକ୍ଷା କର କବି ।
ଦେଖିବ ତା'ରି ଭିତରେ
କଢ଼ ହୋଇ ଫୁଟିଛନ୍ତି
ବିଜୟର ଶତ ପୁଷ୍ପଗୁଚ୍ଛ ।

❑❑❑

।।:ଖଲୀଲ ଜିବ୍ରାନଙ୍କ କବିତାରେ ଏହାର ପରିସମାପ୍ତି ।।

Digitized by PPRACHIN/SOA



ଶ୍ରୀ ହରିହର ମିଶ୍ର

ଓଡ଼ିଆ ଭାଷା ସାହିତ୍ୟର ସ୍ୱକୀୟ ରଚନାରେ ପ୍ରତିଷ୍ଠା ଲାଭ କରିଥିବା ଅଧ୍ୟାପକ ହରିହର ମିଶ୍ର ୧୯୪୧ ରେ ପୁରୀ ଠାରେ ଜନ୍ମଗ୍ରହଣ କରିଥିଲେ। ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ବିଭାଗ ଯଥା- କବିତା, ନାଟକ, ଗଳ୍ପ, ଉପନ୍ୟାସ ଆଦିରେ ସେ ଲେଖନୀ ଚାଳନା କରି ୩୦ରୁ ଅଧିକ ପ୍ରକାଶିତ ପୁସ୍ତକର ଲେଖକ ଭାବେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି।

ନାଟକ ରଚନା କରି ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ସହିତ ବିଷୁବ ସମ୍ମାନ, ଯଦୁମଣି ସମ୍ମାନ, ଓଡ଼ିଶା ସଂଗୀତ ଏକାଡ଼େମୀରୁ ପ୍ରଶଂସା ପତ୍ର ଓ ଅନେକ ସମ୍ମାନର ଅଧିକାରୀ ଅଧ୍ୟାପକ ମିଶ୍ର ସଂଗୀତ ସ୍ୱର-ସଂଯୋଜନା ତଥା ବେତାର ନାଟକର ନିର୍ଦ୍ଦେଶନା କ୍ଷେତ୍ରରେ ବିଶେଷ ସୁନାମର ଅଧିକାରୀ ହୋଇ ପାରିଛନ୍ତି।

ସମ୍ପ୍ରତି ଅଧ୍ୟାପନାରୁ ଅବସର ଗ୍ରହଣ କରି ନିଜର ପୁରୀସ୍ଥ ବାସଭବନରେ ଓଡ଼ିଆ ସାହିତ୍ୟ ସାଧନାରେ ନିରନ୍ତର ନିଯୁକ୍ତ କରିଛନ୍ତି।

**ପ୍ରକାଶକ**

Digitized by PPRACHIN/SOA